# ହିତୋପଦେଶଃ

## ୩ୟ ଭାଗ ।

## ବିଗ୍ରହଃ ।

ପଣ୍ଡିତ ୬ ସୁଦର୍ଶନ ନନ୍ଦଙ୍କ ଦ୍ୱାରା
ମୂଳ ସଂସ୍କୃତରୁ ପଦ୍ୟାନୁବାଦିତ
ଶ୍ରୀ କୃତ୍ତିବାସ ନନ୍ଦ ଶର୍ମାଙ୍କ ଦ୍ୱାରା ସଂଶୋଧିତ
ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ପ୍ରକାଶିତ ।

* ୨ୟ ସଂସ୍କରଣ । *

କଟକ, ଅରୁଣୋଦୟ ପ୍ରେସରେ ୧ମ ବାର ମୁଦ୍ରିତ ।

**ପ୍ରାପ୍ତିସ୍ଥାନ -**
**ଅରୁଣୋଦୟ-ପୁସ୍ତକାଳୟ**
**ବାଲୁବଜାର୍-କଟକ ।**
**ପୋ: ଚାନ୍ଦନୀଚୌକ ।**

୧୯୩୧

ମୂଲ୍ୟ ଟ ° । ଗ୍ରଅଣା ମାତ୍ର

GPNanda Colln., Digitized by srujanika@gmail.com

# ହିତୋପଦେଶଃ



ବିଗ୍ରହଃ ।

ପୁନଃ କଥାରମ୍ଭକାଳେ ରାଜପୁତ୍ରୈରୁକ୍ତଂ । ଆର୍ଯ୍ୟ ରାଜପୁତ୍ରା ବୟଂ, ତତ୍ ବିଗ୍ରହଂ ଶ୍ରୋତୁଂ ନଃ କୁତୂହଳମସ୍ତି । ବିଷ୍ଣୁଶର୍ମ୍ମୋବାଚ—ଯଦେବ ଭବଦ୍ଭ୍ୟୋ ରୋଚତେ ତତ୍ କଥୟାମି । ବିଗ୍ରହଃ ଶ୍ରୂୟତାଂ । ଯସ୍ୟାୟମାଦ୍ୟଃ ଶ୍ଳୋକଃ ।

ବିଗ୍ରହ ।

ବିଷ୍ଣୁଶର୍ମ୍ମା । ଯେତେବେଳେ ପୁନର୍ବାର ଗଳ୍ପ ଆରମ୍ଭ କରନ୍ତି; ସେତେବେଳେ ରାଜପୁତ୍ରମାନେ କହିଲେ,—ଗୁରୁଦେବ ! ଆମ୍ଭେମାନେ ରାଜପୁତ୍ର, ଅତଏବ ଯୁଦ୍ଧର ବିଷୟ ଶୁଣି ଆମ୍ଭେମାନେ ଆନନ୍ଦିତ ହେବୁଁ । ତାହା ଶୁଣି ବିଷ୍ଣୁଶର୍ମା କହିଲେ—ତୁମ୍ଭମାନଙ୍କର ଅଭିଳଷିତ ବିଷୟ କହୁଅଛି । ଯୁଦ୍ଧର ବିଷୟ ଶ୍ରବଣକର । ତାହାର ପ୍ରଥମ ଶ୍ଳୋକ ଏହି—

ହଂସୈଃ ସହ ମୟୂରାଣାଂ ବିଗ୍ରହେ ତୁଲ୍ୟ ବିକ୍ରମେ ।
ବିଶ୍ୱାସ୍ୟ ବଞ୍ଚିତା ହଂସାଃ କାକୈଃ ସ୍ଥିତ୍ୱାରିମନ୍ଦିରେ । ୧ ।

ହଂସ ଆଉ ମୟୂରର ସଂଗ୍ରାମ ଭୂମିର, ବଳବୀର୍ଯ୍ୟେ ଦୁଇପକ୍ଷ ଥିଲେ ସମତୁଲ । ଶତ୍ରୁ ଗୃହେ ପଶି କାକ ଜନ୍ମାଇ ବିଶ୍ୱାସ, ଶେଷେ ହଂସଦଳେ ଘଟାଇଲା ସର୍ବନାଶ । ୧ ।

ରାଜପୁତ୍ରା ଊଚୁଃ—କଥମେତତ୍ । ବିଷ୍ଣୁଶର୍ମ୍ମା କଥୟତି । ଅସ୍ତି କର୍ପୂରଦ୍ୱୀପେ ପଦ୍ମକେଳିନାମଧେୟଂ ସରଃ । ତତ୍ର ହିରଣ୍ୟଗର୍ଭୋ ନାମ ରାଜହଂସଃ ପ୍ରତିବସତି । ସ ଚ ସର୍ବଜଳଚରୈଃ ପକ୍ଷିଭିର୍ମିଳିତ୍ୱା ପକ୍ଷିରାଜ୍ୟେଽଭିଷିକ୍ତଃ । ଯତଃ ।

GPNanda Colln., Digitized by srujanika@gmail.com

ରାଜପୁତ୍ରମାନେ ପଚାରିଲେ—ସେ କି ପ୍ରକାର ? ବିଷ୍ଣୁଶର୍ମା କହିଲେ । କର୍ପୂରଦ୍ୱୀପରେ ପଦ୍ମକେଳିନାମକ ଏକ ସରୋବର ଅଛି । ସେହି ସରୋବରରେ ହିରଣ୍ୟଗର୍ଭ ନାମରେ ଏକ ରାଜହଂସ ବାସକରେ । ସମସ୍ତ ଜଳଚର ପକ୍ଷୀମାନେ ମିଳିତ ହୋଇ ସେହି ରାଜହଂସକୁ ପକ୍ଷୀରାଜ୍ୟରେ ଅଭିଷେକ କଲେ । କାରଣ—

ଯଦି ନ ସ୍ୟାନ୍ନରପତିଃ ସମ୍ୟଙ୍ନେତା ତତଃ ପ୍ରଜା ।
ଅକର୍ଣ୍ଣଧାରା ଜଳଧୌ ବିପ୍ଲବେତେହ ନୌରିବ । ୨ ।

ସୁପଥେ ଚଳନ୍ତି ସର୍ବେ ଯାହା'ର ଶାସନେ, ସେହି ନରପତି ଯଦି ନ ଥାଏ ଭୁବନେ, ତେବେ କର୍ଣ୍ଣଧାର ହୀନ ତରଣୀର ପ୍ରାୟେ; ଏ ଲୋକସମାଜ ସବୁ ରସାତଳେ ଯାଏ । ୨ ।

ଅପରଞ୍ଚ । ପ୍ରଜାଂ ସଂରକ୍ଷତି ନୃପଃ ସା ବର୍ଦ୍ଧୟତି ପାର୍ଥିବଂ ।
ବର୍ଦ୍ଧନାଦ୍ରକ୍ଷଣଂ ଶ୍ରେୟସ୍ତଦଭାବେ ସଦପ୍ୟସତ୍ । ୩ ।

ବିଧିମତେ ରାଜା ପ୍ରଜା କରିବ ପାଳନ, ପ୍ରଜାମାନେ ରାଜାବଳ କରିବେ ବର୍ଦ୍ଧନ, ବର୍ଦ୍ଧନ ଅପେକ୍ଷା ରକ୍ଷା ଜାଣିବ ପ୍ରଧାନ, ରକ୍ଷା ନ ହୋଇଲେ ଥିବା ନ ଥିବା ସମାନ । ୩ ।

ଏକଦାଽସୌ ରାଜହଂସଃ ସୁବିସ୍ତୀର୍ଣ୍ଣ କମଳପର୍ଯ୍ୟଙ୍କେ ସୁଖାସୀନଃ ପରିବାରପରିବୃତ ସ୍ତିଷ୍ଠତି । ତତଃ କୁତୋଽପି ଦେଶାଦାଗତ୍ୟ ଦୀର୍ଘମୁଖୋନାମ ବକଃ ପ୍ରଣମ୍ୟୋପବିଷ୍ଟଃ । ରାଜୋବାଚ—ଦୀର୍ଘମୁଖ ଦେଶାନ୍ତରାଦାଗତୋଽସି । ବାର୍ତ୍ତାଂକଥୟ । ସ ବ୍ରୂତେ—ଦେବ ଅସ୍ତି ମହତୀ ବାର୍ତ୍ତା । ତାମାଖ୍ୟାତୁକାମ ଏବ ସତ୍ୱରମାଗତୋଽହଂ । ଶ୍ରୂୟତାଂ । ଅସ୍ତି ଜମ୍ବୁଦ୍ୱୀପେ ବିନ୍ଧ୍ୟୋନାମ ଗିରିଃ । ତତ୍ର ଚିତ୍ରବର୍ଣ୍ଣୋ ନାମ ମୟୂରଃ ପକ୍ଷିରାଜୋ ନିବସତି । ତସ୍ୟାଽନୁଚରୈ ରହଂ ଦଗ୍ଧାରଣ୍ୟମଧ୍ୟେ ଚରନ୍ନବଲୋକିତଃ ପୃଷ୍ଟଶ୍ଚ—କସ୍ତ୍ୱଂ, କୁତଃ ସମାଗତୋଽସି ତତୋ ମୟୋକ୍ତଂ । କର୍ପୂରଦ୍ୱୀପସ୍ୟ ରାଜଚକ୍ରବର୍ତ୍ତିନୋ ହିରଣ୍ୟଗର୍ଭସ୍ୟ ରାଜହଂସସ୍ୟାଽନୁଚରୋଽହଂ । କୌତୁକାତ୍ ଦେଶାନ୍ତରଂ ଦ୍ରଷ୍ଟୁଂ ଆଗତୋଽସ୍ମି । ତଚ୍ଛ୍ରୁତ୍ୱା ପକ୍ଷିଭିରୁକ୍ତଂ—ଅନୟୋଃ ଦେଶୟୋଃ କୋଦେଶୋ ଭଦ୍ରତରୋ ରାଜା ବା । ତତୋ ମୟୋକ୍ତଂ—ଆଃ କିମେବଂ ଉଚ୍ୟତେ । ମହଦନ୍ତରଂ । ଯତଃ କର୍ପୂରଦ୍ୱୀପଃ ସ୍ୱର୍ଗ ଏବ; ରାଜା ଚ ଦ୍ୱିତୀୟ ସ୍ୱର୍ଗପତିଃ । କଥଂବର୍ଣ୍ଣୟିତୁଂ

GPNanda Colln., Digitized by srujanika@gmail.com

ଖ୍ୟାୟତେ । ଅତ୍ର ମରୁସ୍ଥଲେ ପତିତା ଯୂୟଂ କିଂ କୁରୁଥ । ଆଗଚ୍ଛତ ଅସ୍ମଦ୍ଦେଶଃ ଗମ୍ୟତାଂ । ତତସ୍ତଦ୍ୱଚନମାକର୍ଣ୍ୟ ସର୍ବେ ସକୋପା ବଭୂବୁଃ । ତଥାଚୋକ୍ତଂ ।

ଏକଦିନ ସେହି ରାଜହଂସ ନିଜ ପରିବାର ବର୍ଗଙ୍କର ପରିବେଷ୍ଟିତ ହୋଇ ସୁବିସ୍ତୃତ ପଦ୍ମସ୍ଥ ପର୍ଯ୍ୟଙ୍କରେ ପରମସୁଖରେ ବସିଅଛି । ଏମନ୍ତ ସମୟରେ ଦୀର୍ଘମୁଖନାମକ ଏକ ବକ କୌଣସି ଦେଶରୁ ସେଠାକୁ ଆସି ରାଜାଙ୍କୁ ପ୍ରଣାମ କରି ବସିଲା । ରାଜା ରାଜହଂସ ତାହାକୁ ପଚାରିଲେ,—ହେ ଦୀର୍ଘମୁଖ ! ତୁମ୍ଭେ ତ ବିଦେଶରୁ ଆସିଲ, ସମ୍ବାଦ କଣ କହ ? ସେ କହିଲା--ମହାରାଜ ! ବିଶେଷ ସମ୍ବାଦ ଅଛି, ତାହା କହିବା ପାଇଁ ଶୀଘ୍ର ଆସିଅଛି । କହୁଅଛି ଶ୍ରବଣ କରନ୍ତୁ । ଜମ୍ବୁଦ୍ୱୀପରେ ବିନ୍ଧ୍ୟ ନାମରେ ଏକ ପର୍ବତ ଅଛି । ସେଠାରେ ଚିତ୍ରବର୍ଣ୍ଣ ନାମକ ପକ୍ଷୀରାଜ ମୟୂର ବାସ କରେ । ମୁଁ ସେହିଠାରେ ଏକ ଦଗ୍ଧ ଅରଣ୍ୟ ମଧ୍ୟରେ ଭ୍ରମଣ କରୁଅଛି, ଏମନ୍ତ ସମୟରେ ସେହି ରାଜାର କେତେଗୁଡ଼ିଏ ଅନୁଚର ମୋତେ ଦେଖି କରି ପଚାରିଲେ,— ତୁମ୍ଭେ କିଏ ? କେଉଁଠାରୁ ଆସିଲ ? ତହିଁରେ ମୁଁ କହିଲି,—କର୍ପୂରଦ୍ୱୀପର ମହାରାଜ ଚକ୍ରବର୍ତ୍ତୀ ରାଜହଂସ ହିରଣ୍ୟଗର୍ଭଙ୍କର ମୁଁ ଅନୁଚର ଅଟେ । କୌତୂହଳ ବଶତଃ ବିଦେଶ ଦେଖିବାକୁ ଆସିଅଛି । ଏହା ଶୁଣିକରି ସେମାନେ କହିଲେ,---ତୁମ୍ଭମାନଙ୍କର ଦେଶ ଓ ଆମ୍ଭମାନଙ୍କର ଦେଶ ଏ ଦୁଇ ଦେଶ ମଧ୍ୟରେ କେଉଁ ଦେଶ ଭଲ ? ଏବଂ କେଉଁ ରାଜା ଭଲ ? ତହିଁରେ ମୁଁ କହିଲି,---ଆଃ ! କାହା ସଙ୍ଗେ କାହାର କଥା ! ବହୁତ ପ୍ରଭେଦ ! କାହିଁକି ନା, ଆମ୍ଭମାନଙ୍କର କର୍ପୂରଦ୍ୱୀପ ସ୍ୱର୍ଗ, ଏବଂ ଆମ୍ଭମାନଙ୍କର ରାଜା ଦ୍ୱିତୀୟ ସ୍ୱର୍ଗପତି ଇନ୍ଦ୍ର । କି ସାଧ୍ୟ ଯେ ତାହା କଥାରେ ବର୍ଣ୍ଣନା କରି ପାରିଯାଏ । ତୁମ୍ଭେମାନେ କି ନିମନ୍ତେ ଏହି ମରୁଭୂମିରେ ପଡ଼ିଅଛ ? ଆସ ଆମ୍ଭ ଦେଶକୁ ଚାଲ । ମୋହର ଏହି କଥା ଶ୍ରବଣ କରି ସେମାନେ ସମସ୍ତେ ମୋହ ଉପରେ ଖଡ୍ଗହସ୍ତ ହେଲେ । କଥିତ ଅଛି ଯେ,—

ପୟଃପାନଂ ଭୁଜଙ୍ଗାନାଂ କେବଳଂ ବିଷବର୍ଦ୍ଧନଂ ।
ଉପଦେଶୋହି ମୂର୍ଖାଣାଂ ପ୍ରକୋପାୟ ନ ଶାନ୍ତୟେ । ୪ ।

ଦୁଃଶୀଳଜନଙ୍କୁ ଯଦି ଶିଖାଅ ସୁନୀତି, ହିତ କଥା ନ ହୋଇ ତା ଘଟଇ ବିପତ୍ତି । ଦୁଗ୍ଧପାନ କଲେ ଯଦି ବିଷଧରଗଣ, ତହିଁରେ କେବଳ ହୁଏ ବିଷର ବର୍ଦ୍ଧନ । ୪ ।

GPNanda Colln., Digitized by srujanika@gmail.com

ଅନ୍ୟଚ୍ଚ । ବିଦ୍ୱାନେବୋପଦେଷ୍ଟବ୍ୟୋ ନାଽବିଦ୍ୱାଂସ୍ତୁ କଦାଚନ ।
ବାନରାନୁପଦିଶ୍ୟାଽଜ୍ଞାନ୍ ସ୍ଥାନଭ୍ରଷ୍ଟା ଯଯୁଃ ଖଗାଃ ।୪।

ଅନ୍ୱୟାର୍ଥ—ସୁଜନ ହୁଅଇ ଉପଦେଶର ଭାଜନ, ଉପଦେଶଯୋଗ୍ୟ କେବେ ନ ହୁଏ କୁଜନ । ବାନରମାନଙ୍କୁ କରି ଉପଦେଶ ଦାନ । ପକ୍ଷୀଗଣ ପଳାଇଲେ ଛାଡ଼ି ନିଜ ସ୍ଥାନ । ୫ ।

ସଞ୍ଜୀବକ ଉବାଚ—କଥମେତତ୍ । ଦୀର୍ଘମୁଖଃ କଥୟତି । ଅସ୍ତି ନର୍ମ୍ମଦା-ତୀରେ ପର୍ବତୋପତ୍ୟକାୟାଂ ବିଶାଳଃ ଶାଲ୍ମଳୀତରୁଃ । ତତ୍ର ନିର୍ମ୍ମିତ ନୀଡ଼-କ୍ରୋଡ଼େ ପକ୍ଷିଣଃ ନିବସନ୍ତି । ଅଥୈକଦା ବର୍ଷାସୁ ନୀଳପଟୈରିବ ଜଳଧର-ପଟଳୈରାବୃତେ ନଭସ୍ତଳେ ଧାରାସାରୈର୍ମହତୀ ବୃଷ୍ଟିର୍ବଭୂବ । ତତୋ ବାନରାଂସ୍ତରୁତଳେଽବସ୍ଥିତାନ୍ ଶୀତାର୍ତ୍ତାନ୍ କମ୍ପମାନାନବଲୋକ୍ୟ କୃପୟା ପକ୍ଷିଭିରୁକ୍ତଂ--ଭୋ ଭୋ ବାନରାଃ ଶୃଣୁତ ।

ରାଜା ପଚାରିଲେ,—ସେ କି ପ୍ରକାର ? ଦୀର୍ଘମୁଖ କହିଲା—ନର୍ମଦା ନଦୀ ତୀରରେ ଏକ ପର୍ବତର ଉପତ୍ୟକାରେ ଏକ ପ୍ରକାଣ୍ଡ ଶାଳ୍ମଳୀବୃକ୍ଷ ଅଛି । ପକ୍ଷୀମାନେ ସେହି ବୃକ୍ଷରେ ବସା ନିର୍ମାଣ କରି ତନ୍ମଧ୍ୟରେ ପରମ ସୁଖରେ ବାସ କରନ୍ତି । ଅନନ୍ତର ଦିନେ ବର୍ଷାକାଳରେ ନୀଳପୁଞ୍ଜ ନ୍ୟାୟ ନିବିଡ଼ ଜଳଧରପୁଞ୍ଜରେ ଗଗନମଣ୍ଡଳ ସମାଚ୍ଛନ୍ନ ହେଲାରୁ ମୂଷଳଧାର ପ୍ରମାଣରେ ଅତି ଘୋରତର ବୃଷ୍ଟିହେଲା । ସେହି ବୃକ୍ଷସ୍ଥ ପକ୍ଷୀମାନେ ଦେଖିଲେ,---ଏକ ଦଳ ବାନର ତରୁତଳେ ବସି ଭିଜିଯାଉଅଛନ୍ତି ଏବଂ ଶୀତାର୍ତ୍ତ ହୋଇ କମ୍ପୁଅଛନ୍ତି । ତାହା ଦେଖି ପକ୍ଷୀମାନେ ଦୟାକରି କହିଲେ,—ହେ ବାନରମାନେ ଶୁଣ,— ।

ଅସ୍ମାଭିର୍ନିର୍ମ୍ମିତା ନୀଡ଼ାଶ୍ଚଞ୍ଚୁମାତ୍ରାହୃତୈସ୍ତୃଣୈଃ ।
ହସ୍ତପାଦାଦିସଂଯୁକ୍ତା ଯୂୟଂ କିମବସୀଦଥ । ୬ ।

ଥିଲେ ମାତ୍ର ତୃଣ ଆଣି ବାନ୍ଧି ବାସସ୍ଥାନ, ଦୁର୍ବଳ ବିହଙ୍ଗ ଆମ୍ଭେ କରୁଁ ଅବସ୍ଥାନ । ତୁମ୍ଭମାନଙ୍କର ହସ୍ତ, ପଦ, ବୁଦ୍ଧିବଳ, ସକଳ ଥିଲେହେଁ କିମ୍ପା ହେଉଛ ବିକଳ । ୬ ।

ତଚ୍ଛ୍ରୁତ୍ୱା ବାନରୈର୍ଜାତାମର୍ଷୈରାଲୋଚିତଂ—ଅହୋ ନିର୍ବାତ ନୀଡ଼ ଗର୍ଭା-ବସ୍ଥିତାଃ ସୁଖିନଃ ପକ୍ଷିଣୋଽସ୍ମାନ୍ ନିନ୍ଦନ୍ତି । ତଦ୍‌ଭବତୁ ତାବଦ୍ ବୃଷ୍ଟେରୁପଶମଃ ।

GPNanda Colln., Digitized by srujanika@gmail.com

ଅନନ୍ତରଂ ଶାନ୍ତେ ପାନୀୟବର୍ଷେ ତୈର୍ବାନରୈର୍ବୃକ୍ଷମାରୁହ୍ୟ ସର୍ବେ ନୀଡ଼ା ଭଗ୍ନାଃ । ତେଷାଂ ପକ୍ଷିଣାଂ ଅଣ୍ଡାନି ଚାଧଃ ପାତିତାନି । ଅତୋଽହଂ ବ୍ରବୀମି—"ବିଦ୍ୱାନେବୋପଦେଷ୍ଟବ୍ୟଃ"—ଇତ୍ୟାଦି । ରାଜୋବାଚ,—ତୈଃ ପକ୍ଷିଭିଃ କିମୁକ୍ତଂ । ଦୀର୍ଘମୁଖଃ କଥୟତି । ତତଃ ପକ୍ଷିଭିଃ କୋପାଦୁକ୍ତଂ—କେନାସୌ ରାଜହଂସଃ କୃତୋ ରାଜା । ତତୋ ମୟୋପଜାତକୋପେନୋକ୍ତଂ—ଯୁଷ୍ମାକଂ ମୟୂରଃ କେନ ରାଜା କୃତଃ । ତଚ୍ଛ୍ରୁତ୍ୱା ତେ ପକ୍ଷିଣୋ ମାଂ ହନ୍ତୁମୁଦ୍ୟତାଃ । ତତୋ ମୟାପି ସ୍ୱବିକ୍ରମୋ ଦର୍ଶିତଃ । ଯତଃ ।

ତାହା ଶୁଣିକରି ବାନରମାନେ ଭାବିଲେ, ଅହୋ ! ଏହି ପକ୍ଷୀମାନଙ୍କର ବସାମଧ୍ୟରେ ବୃଷ୍ଟିଜଳ ପ୍ରବେଶ କରି ପାରେ ନାହିଁ, ଏଥିରୁ ତନ୍ମଧ୍ୟରେ ସୁଖରେ ଅଛନ୍ତି ବୋଲି ଆମ୍ଭମାନଙ୍କୁ ନିନ୍ଦା କରୁଅଛନ୍ତି । ଅଚ୍ଛା ! ବୃଷ୍ଟି କମି ଗଲେ ତାହାର ପ୍ରତିଫଳ ଦେବୁଁ । ଅନନ୍ତର ବୃଷ୍ଟି କମିଲାରୁ ବାନରଗଣ ବୃକ୍ଷକୁ ଉଠି ସମସ୍ତ ପକ୍ଷୀ ବସା ଭାଙ୍ଗି ପକାଇଲେ ଏବଂ ସେମାନଙ୍କର ଡିମ୍ବ-ଗୁଡ଼ିକ ପକାଇଦେଲେ । ସେଥିପାଇଁ କହୁଥିଲି ଯେ,—"ଜ୍ଞାନୀଜନ ହୁଅନ୍ତି ଉପ-ଦେଶର ଭାଜନ" ଇତ୍ୟାଦି । ରାଜା ପଚାରିଲେ,—ତହିଁ ପରେ ସେହି ପକ୍ଷୀ-ମାନେ ତୁମ୍ଭକୁ କଣ କହିଲେ ? ଦୀର୍ଘମୁଖ କହିଲା,—ପକ୍ଷୀମାନେ କ୍ରୋଧ ହୋଇ କହିଲେ,—ତୁମ୍ଭମାନଙ୍କର ଏହି ରାଜହଂସଙ୍କୁ କିଏ ରାଜା କଲା ? ତାହା ଶୁଣି କ୍ରୋଧ ହୋଇ ମୁଁ କହିଲି,—ତୁମ୍ଭମାନଙ୍କର ଏହି ମୟୂରକୁ କିଏ ରାଜା କଲା ? । ତାହା ଶୁଣି ସେହି ସକଳ ପକ୍ଷୀ ମୋତେ ମାରିବାକୁ ଉଦ୍ୟତ ହେଲେ । ତେତେବେଳେ ମୁଁ ନିଜ ପରାକ୍ରମ ପ୍ରକାଶ କଲି ।

କାରଣ, --

ଅନ୍ୟଦା ଭୂଷଣଂ ପୁଂସଃ କ୍ଷମା ଲଜ୍ଜେବ ଯୋଷିତଃ ।
ପରାକ୍ରମଃ ପରିଭବେ ବୈୟାତ୍ୟଂ ସୁରତେଷ୍ୱିବ । ୭ ।

ରମଣୀର ଲଜ୍ଜାଗୁଣ ଭୂଷଣ ଯେପରି, ପୁରୁଷର କ୍ଷମାଗୁଣ ସେପରି ଭୂଷଣ । କିନ୍ତୁ ଲଜ୍ଜା ରତିକାଳେ ନ ଶୋଭେ ଯେପରି, କ୍ଷମା ମଧ୍ୟ ଯୁଦ୍ଧକାଳେ ନ ଶୋଭେ ସେପରି । ୭ ।

ରାଜାବିହସ୍ୟାହ । ଆତ୍ମନଶ୍ଚ ପରେଷାଂ ଚ ଯଃ ସମୀକ୍ଷ୍ୟ ବଳାବଳଂ ।
ଅନ୍ତରଂ ନୈବ ଜାନାତି ସ ତିରସ୍କ୍ରିୟତେଽରିଭିଃ । ୮ ।

GPNanda Colln., Digitized by srujanika@gmail.com

ରାଜା ରାଜହଂସ ହାସ୍ୟକରି କହିଲେ,--ଆତ୍ମବଳ ପରବଳ ନ ବୁଝେ ଯେ ଜନ, ଷଣ୍ଢ, ହସ୍ତେ ଶାସ୍ତି ତାର ହୁଏ ଏ ଲକ୍ଷଣ । ୮ ।

ଅନ୍ୟଚ--ସୁଚିରଂ ହି ଚରନ୍ନିତ୍ୟଂ କ୍ଷେତ୍ରେ ଶସ୍ୟମବୁଦ୍ଧିମାନ୍ ।
ଦ୍ୱୀପି ଚର୍ମପରିଚ୍ଛନ୍ନୋ ବାଗ୍‌ଦୋଷାଦ୍ ଗର୍ଦ୍ଦଭୋ ହତଃ । ୯ ।

ଅନୁବାଧ--ସୁଖେଖାଇଲା ଶସ୍ୟକ୍ଷେତ୍ରେ ବ୍ୟାଘ୍ରଚର୍ମ ପିନ୍ଧି, କେହି ନ ଯାଏ ତା ପାଶେ ବ୍ୟାଘ୍ର ଭାବି କି, ନିର୍ବୋଧ ଗର୍ଦ୍ଦଭ ଦେଖ ଛାଡିଲା ହୁଙ୍କାର, ତକ୍ଷଣେ କୃଷକ ତାକୁ କରିଲା ସଂହାର । ୯ ।

ବକଃ ପୃଚ୍ଛତି—କଥମେତତ୍ । ରାଜା କଥୟତି । ଅସ୍ତି ହସ୍ତିନାପୁରେ ବିଳାସୋ ନାମ ରଜକଃ । ତସ୍ୟ ଗର୍ଦ୍ଦଭୋଽତିଭାରବହନାତ୍ ଦୁର୍ବଳୋ ମୁମୂର୍ଷୁରିବାଽଭବତ୍ । ତତସ୍ତେନ ରଜକେନାଽସୌ ବ୍ୟାଘ୍ରଚର୍ମଣା ପ୍ରଚ୍ଛାଦ୍ୟାମ-ରଣ୍ୟସମୀପେ ଶସ୍ୟକ୍ଷେତ୍ରେ ମୋଚିତଃ ।

ତତୋ ଦୂରାଦବଲୋକ୍ୟ ବ୍ୟାଘ୍ରବୁଦ୍ଧ୍ୟା କ୍ଷେତ୍ରପତୟଃ ସତ୍ୱରଂ ପଲାୟନ୍ତେ । ଅଥ କେନାଽପି ଶସ୍ୟରକ୍ଷକେଣ ଧୂସରକମ୍ବଳକୃତତନୁତ୍ରାଣେନ ଧନୁଃକାଣ୍ଡଂ ସଜ୍ଜୀକୃତ୍ୟାବନତ କାୟେନ ଏକାନ୍ତେ ସ୍ଥିତଂ ତଂ ଚ ଦୂରାଦ୍‌ଦୃଷ୍ଟ୍ୱା ଗର୍ଦ୍ଦଭଃ ପୁଷ୍ଟାଙ୍ଗୋ ଯଥେଷ୍ଟଶସ୍ୟଭକ୍ଷଣଜାତବଲୋ ଗର୍ଦ୍ଦଭୋଽୟମିତି ମତ୍ୱୋଚ୍ଚୈଃ ଶବ୍ଦଂ କୁର୍ବାଣ ସ୍ତଦଭିମୁଖଂ ଧାବିତଃ । ତତସ୍ତେନ ଶସ୍ୟରକ୍ଷକେଣ ଚୀତ୍କାର ଶବ୍ଦାତ୍ ଗର୍ଦ୍ଦଭୋଽୟମିତି ଜ୍ଞାତ୍ୱା ଲୀଳୟୈବ ବ୍ୟାପାଦିତଃ । ଅତୋଽହଂ ବ୍ରବୀମି, " ସୁଚିରଂ ହି ଚରନ୍ନିତ୍ୟଂ" ଇତ୍ୟାଦି । ଦୀର୍ଘମୁଖୋ ବ୍ରୂତେ ତତସ୍ତୈଃ ପକ୍ଷିଭିରୁକ୍ତଂ, ଅରେ ପାପ ଦୁଷ୍ଟବକ ଅସ୍ମାକଂ ଭୂମୌ ଚରନ୍ ଅସ୍ମାକଂ ସ୍ୱାମିନମ-ଧିକ୍ଷିପସି । ତନ୍ନ କ୍ଷନ୍ତବ୍ୟମିଦାନୀଂ । ଇତ୍ୟୁକ୍ତ୍ୱା ସର୍ବେ ମାଂ ଚଞ୍ଚୁଭିର୍ହତ୍ୱା ସକୋପା ଊଚୁଃ,—ପଶ୍ୟ ରେ ମୂର୍ଖ ସ ହଂସସ୍ତବ ରାଜା ସର୍ବଥା ମୃଦୁଃ, ତସ୍ୟ ରାଜାଧି-କାରେ ନାସ୍ତି । ଯତଃ ଏକାନ୍ତତୋ ମୃଦୁଃ କରତଳଗତମପ୍ୟର୍ଥଂ ରକ୍ଷିତୁ-ମକ୍ଷମଃ । କଥଂ ସ ପୃଥ୍ୱୀଂ ଶାସ୍ତି ରାଜ୍ୟଂ ବା ତସ୍ୟ କିଂ ? ତ୍ୱଂ ଚ କୂପମଣ୍ଡୂକ-ସ୍ତେନ ତଦାଶ୍ରୟମୁପଦିଶସି । ଶୃଣୁ ।

ବକ ପଚାରିଲା, ସେ କି ପ୍ରକାର ? । ରାଜହଂସ କହିଲା । ହସ୍ତିନା-ନଗରରେ ବିଳାସ ନାମରେ ଏକ ରଜକ ଅଛି । ତାହାର ଗର୍ଦ୍ଦଭ ଅତିରିକ୍ତ

GPNanda Colln., Digitized by srujanika@gmail.com

ଘାସ ବହନକରି କ୍ରମେ ଦୁର୍ବଳ ଓ ମୃତପ୍ରାୟ ହୋଇ ପଡ଼ିଲା । ଅନନ୍ତର ରଜକ ସେହି ଗଦ୍ଦଭକୁ ବ୍ୟାଘ୍ର ଚର୍ମରେ ଆଚ୍ଛାଦିତକରି ବନ ନିକଟରେ ଥିବା ଶସ୍ୟ କ୍ଷେତ୍ରରେ ଛାଡ଼ିଦେଲା । କ୍ଷେତ୍ରସ୍ୱାମୀ ଦୂରରୁ ତାହାକୁ ଦେଖି ବ୍ୟାଘ୍ର ମନେକରି ବେଗରେ ପଳାୟନ କଲା । ଅନନ୍ତର ଏକ ଶସ୍ୟରକ୍ଷକ କୃଷକ ଧୂସରବର୍ଣ୍ଣ କମ୍ବଳଦ୍ୱାରା ଦେହ ଆଚ୍ଛାଦନକରି, ଧନୁର୍ବାଣଦ୍ୱାରା ସୁସଜ୍ଜିତ ହୋଇ ସେହି ଶସ୍ୟକ୍ଷେତ୍ରର ଏକ ନିଭୃତ ସ୍ଥାନରେ ଅବନତ ଭାବରେ ଅବସ୍ଥାନକଲା । ସେହି ବ୍ୟାଘ୍ରଚର୍ମାବୃତ ଗର୍ଦ୍ଦଭ ସ୍ୱଚ୍ଛନ୍ଦରେ ଶସ୍ୟ ଭୋଜନ କରି ଉଲ୍ଲକ୍ଷଣ ବଳିଷ୍ଠ ଓ ହୃଷ୍ଟପୁଷ୍ଟ ହୋଇଥିଲା । ସେ ଦୂରରୁ ଏହି କୃଷକକୁ ଦେଖିକରି ତାହାକୁ ସ୍ୱଜାତି ମନେକରି ଉଚ୍ଚୈଃସ୍ୱରରେ ଡାକି ତାହାର ଅଭିମୁଖରେ ଧାବିତ ହେଲା । ଶସ୍ୟରକ୍ଷକ ସେତେବେଳେ ଗର୍ଦ୍ଦଭ ବୋଲି ଜାଣିପାରିଲା ଏବଂ ଅନାୟାସେ ତାହାକୁ ବଧ କଲା । ଏହିନିମିତ୍ତ ମୁଁ କହିଥିଲି ଯେ,—'ସୁଖେ ଥିଲା ଶସ୍ୟକ୍ଷେତ୍ରେ ବ୍ୟାଘ୍ରଚର୍ମ ଦେଇ'—ଇତ୍ୟାଦି । ଦୀର୍ଘମୁଖ କହିଲା,—ତାହାପରେ ସେହି ପକ୍ଷୀମାନେ କହିଲେ—ଆରେ ପାପିଷ୍ଠ ଦୁଷ୍ଟ ବକ ! ତୁ ଅମ୍ଭର ଭୂମିରେ ବିଚରଣ କରି ଅମ୍ଭର ମହାରାଜଙ୍କୁ ଗାଳି ଦେଉଅଛୁ । ଏହା ଆମ୍ଭେମାନେ ସହ୍ୟ କରିବୁ ନାହିଁ । ଏହା କହି ସମସ୍ତେ ଚଞ୍ଚୁଦ୍ୱାରା ପ୍ରହାର କରି କ୍ରୋଧ ହୋଇ କହିଲେ,—ଦେଖ ରେ ମୂର୍ଖ ! ତୋହର ରାଜା ସେହି ରାଜହଂସ ନିତାନ୍ତ ନିସ୍ତେଜ ଅତଏବ ତାହାର ରାଜପଦରେ ଅଧିକାର ନାହିଁ; କାରଣ, ଅତ୍ୟନ୍ତ ନିସ୍ତେଜ ବ୍ୟକ୍ତି, ଲକ୍ଷ୍ମୀ ହସ୍ତଗତ ହେଲେ ମଧ୍ୟ ତାହା ରକ୍ଷା-କରିପାରେ ନାହିଁ । ଅତଏବ ସେପରି ବ୍ୟକ୍ତି କିପରି ପୃଥିବୀ ଶାସନ କରିବ ? । ଅଥବା ତାହାର ରାଜ୍ୟ ବା କଣ ? । ତୁମ୍ଭେ କଣ କୂପମଣ୍ଡୂକ, ଏହି ନିମିତ୍ତ ତାହାର ଆଶ୍ରୟ ଗ୍ରହଣ କରିବାକୁ ଉପଦେଶ ଦେଉଅଛ । ଶ୍ରବଣ କର,—

ସେବିତବ୍ୟୋ ମହାବୃକ୍ଷଃ ଫଳଚ୍ଛାୟାସମନ୍ୱିତଃ ।
ଯଦି ଦୈବାତ୍ ଫଳଂ ନାସ୍ତି ଛାୟା କେନ ନିବାର୍ଯ୍ୟତେ । ୯ ।

ଫଳ ଅଉ ଛାୟା ଯହିଁ ଅଛି ଏ ଉଭୟ, ସେହି ତରୁବର ସବୁ କରିବ ଅଶ୍ରୟ । ଦୈବାତ ଯଦିବା ଫଳ ନ କରେ ଧାରଣ, ସୁଶୀତଳ ଛାୟା ତାର କେ କରେ ବାରଣ ? । ୧୦ ।

GPNanda Colln., Digitized by srujanika@gmail.com

ଅନ୍ୟଚ୍ଚ—ହୀନସେବା ନ କର୍ତ୍ତବ୍ୟା କର୍ତ୍ତବ୍ୟା ମହଦାଶ୍ରୟଃ ।
ପୟୋଽପି ଶୌଣ୍ଡିକୀ ହସ୍ତେ ବାରୁଣୀତ୍ୟଭିଧୀୟତେ । ୧୧ ।

ଅନ୍ତମଧ—ଥିଲେହେଁ ନିର୍ମଳ ଜଳ ଶୌଣ୍ଡିକର କରେ, ତାହାକୁ ଯେ ସୁରା ଭାବି ଲୋକେ ଘୃଣା କରେ । ଅତଏବ ନୀଚର ସେବା କରିବ ନାହିଁ,। ସର୍ବ-, କାଳେ ମହତର ଆଶ୍ରୟ ନେବଇଁ । ୧୧ ।

ଅନ୍ୟା ହି ନୃପପ୍ରସାଦେନ ବନେ ଚରନ୍ତି ନିର୍ଭୟଂ ।
ରାମମାସାଦ୍ୟ ଲଙ୍କାୟାଂ ଲେଭେ ରାଜ୍ୟଂ ବିଭୀଷଣଃ । ୧୨ ।

ଯହିଁ ଯହ କୃପାକର ହାତରେ ଅଛନ୍ତି, ଅନ୍ୟ ମଧ୍ୟ ବନେ ଚରେ ହୋଇଣ ନିର୍ଭୟ । ଶ୍ରୀରାମର ପଦାଶ୍ରୟ କରିଣ ଗ୍ରହଣ, ଲଙ୍କାରେ ରାଜତ୍ୱ ଲଭ କଲା ବିଭୀଷଣ । ୧୨ ।

ଅନ୍ୟଚ୍ଚ । ମହାନପ୍ୟଲ୍ପତାଂ ଯାତି ନିର୍ଗୁଣେ ଗୁଣବିସ୍ତରଃ ।
ଆଧାରାଧେୟଭାବେନ ଗଜେନ୍ଦ୍ର ଇବ ଦର୍ପଣେ । ୧୩ ।

ଅନ୍ତମଧ୍ୟ—ନିର୍ଗୁଣ ଜନର ଯେବେ ଆଶ୍ରୟ ଲଭିବ, ଗୁଣବାନ୍ ବଡ଼ଲୋକ କ୍ଷୁଦ୍ର ହୋଇବ । ଦର୍ପଣେ ଗଜେନ୍ଦ୍ରମୂର୍ତ୍ତି କ୍ଷୁଦ୍ରହିଁ ଦେଖାଏ, ସମସ୍ତେ ଅଦର୍ଶ-ଭୂଲ୍ୟ ଦୋଷ ଗୁଣ ଯାଏ । ୧୩ ।

ବିଶେଷତଶ୍ଚ । ବ୍ୟପଦେଶେଽପି ସିଦ୍ଧିଃ ସ୍ୟାଦତିଶକ୍ତେ ନରାଧିପେ ।
ଶଶିନୋ ବ୍ୟପଦେଶେନ ବସନ୍ତି ଶଶକାଃ ସୁଖଂ । ୧୪ ।

ବିଶେଷରେ—ପ୍ରବଳ ପ୍ରତାପ ଯହିଁ ନରପତି ହୁଏ, ନାମ ଧରିଲେ ତାହାର ଭୟ ଦୂରେ ଯାଏ । ଶଶାଙ୍କର ନାମ ଧରି ଶଶାଙ୍କ ସକଳେ, ନିର୍ଭୟ ହୋଇଣ ବାସ କଲେ ସେ କୁଶଳେ । ୧୪ ।

ମନ୍ତ୍ରିଭିରୁକ୍ତଂ—କଥମେତତ୍ । ପକ୍ଷିଣଃ କଥୟନ୍ତି । କଦାଚିଦ୍ ବର୍ଷାସ୍ୱପି ବୃଷ୍ଟେରଭାବାତ୍ ତୃଷାର୍ତ୍ତୋ ଗଜୟୂଥୋ ଯୂଥପତିମାହ । ନାଥ କୋଽଭ୍ୟୁ-ପାୟୋଽସ୍ମାକଂ ଜୀବନାୟ । ନାସ୍ତି କ୍ଷୁଦ୍ରଜନ୍ତୂନାଂ ନିମଜ୍ଜନସ୍ଥାନଂ । ବୟଂ ଚ ନିମଜ୍ଜନାଭାବାଦନ୍ଧା ଇବ କ୍ୱ ଯାମଃ କିଂ ବା କୁର୍ମଃ । ତତୋ ହସ୍ତିରାଜୋ ନାତିଦୂରଂ ଗତ୍ୱା ନିର୍ମଳଂ ହ୍ରଦଂ ଦର୍ଶିତବାନ୍ । ତତୋ ଦିନେଷୁ ଗଚ୍ଛତ୍ସୁ ତତ୍ତୀରସ୍ଥିତ ଶଶକା ଗଜଯୂଥପାଦାହତିଭିଶ୍ଚୂର୍ଣ୍ଣିତାଃ । ଅନନ୍ତରଂ ଶିଲୀମୁଖୋ

GPNanda Colln., Digitized by srujanika@gmail.com

ଶଶକଶ୍ଚିନ୍ତୟାମାସ । ଅନେନ ଗଜଯୂଥେନ ପିପାସାକୁଳିତେନ ପ୍ରତ୍ୟହମତ୍ରା-ଗନ୍ତବ୍ୟଂ । ଅତୋ ବିନଷ୍ଟମସ୍ମତ୍କୁଳଂ । ତତୋ ବିଜୟୋ ନାମ ବୃଦ୍ଧଶଶକୋ-ଽବଦତ୍--ମା ବିଷୀଦତ ପ୍ରତୀକାରୋ ମୟା କର୍ତ୍ତବ୍ୟଂ । ଇତି ପ୍ରତିଜ୍ଞାୟ ଚଳିତଃ । ଗଚ୍ଛତା ଚ ତେନାଲୋଚିତଂ ; କଥଂ ମୟା ଗଜଯୂଥପନିକଟେ ଗତ୍ୱା ବକ୍ତବ୍ୟଂ । ଯତଃ ।

ମୁଁ ପଚାରିଲି,—ସେ କିପରି ? । ପକ୍ଷୀମାନେ କହିଲେ । ଏକଦା ବର୍ଷାକାଳରେ ବୃଷ୍ଟି ନ ହେବାରୁ ହସ୍ତୀଗଣ ତୃଷାର୍ତ୍ତ ହୋଇ ଯୂଥପତିକୁ ନିବେଦନ କଲେ,—ପ୍ରଭୋ ! ଅମ୍ଭମାନଙ୍କର ଜୀବନ ରକ୍ଷା କରିବାର ଉପାୟ କି ? କ୍ଷୁଦ୍ରଜନ୍ତୁମାନଙ୍କର ଅବଗାହନର ସ୍ଥାନ ନାହିଁ । ଅମ୍ଭେମାନେ ଅବଗାହନର ଅଭାବରେ ଯାତନାରେ ଅନ୍ଧପ୍ରାୟ ହୋଇଅଛୁଁ, କେଉଁଆଡ଼େ ଯିବୁ ବା କଣ କରିବୁ ? । ଅନନ୍ତର ଗଜରାଜ ଅନତିଦୂରକୁ ସେମାନଙ୍କୁ ନେଇ ଯାଇ ଗୋଟିଏ ନିର୍ମ୍ମଳ ସରୋବର ଦେଖାଇ ଦେଲେ । ଦିନ ଦିନ ସେହି ଗଜଯୂଥର ପଦାଘାତରେ ସେହି ସରୋବର ତୀରବର୍ତ୍ତୀ ଶଶକମାନେ ଚୂର୍ଣ୍ଣିତ ହେବାକୁ ଲାଗିଲେ । ଅନନ୍ତର ଶିଲୀମୁଖ ନାମରେ ଏକ ଶଶକ ମନେ ଚିନ୍ତାକଲା,—ଏହି ତୃଷାର୍ତ୍ତ ହସ୍ତୀଦଳ ପ୍ରତିଦିନ ଏହି ସ୍ଥାନକୁ ଆସିବେ । ଅତଏବ ଦେଖୁଅଛି ଅମ୍ଭେମାନେ ସବଂଶରେ ବିନଷ୍ଟ ହେବୁଁ । ଅନନ୍ତର ବିଜୟ ନାମରେ ଏକ ବୃଦ୍ଧ ଶଶକ ତାହାଙ୍କୁ କହିଲା,—ତୁମ୍ଭେମାନେ ହତାଶ ହୁଅନାହିଁ ମୁଁ ଏହାର ପ୍ରତିକାର କରିବି । ସେ ଏହିପରି ପ୍ରତିଜ୍ଞା କରି ପ୍ରସ୍ଥାନ କଲା । ସେ ଯାଉଁ' ଭାବିଲା,—ମୁଁ କିପରି ଗଜଯୂଥପତି ନିକଟକୁ ଯାଇ ବକ୍ତବ୍ୟ ବିଷୟ ପ୍ରକାଶ କରିବି । କାରଣ,—

ସ୍ପୃଶନ୍ନପି ଗଜୋ ହନ୍ତି ଜିଘ୍ରନ୍ନପି ଭୁଜଙ୍ଗମଃ ।
ପାଳୟନ୍ନପି ଭୂପାଳଃ ପ୍ରହସନ୍ନପି ଦୁର୍ଜ୍ଜନଃ । ୧୫ ।

କଣ ଅଧି କରେ ଯଦି ଦେହକୁ ସ୍ପର୍ଶନ, କେବଳ ଆଘ୍ରାଣ ଯଦି କରେ ସର୍ପଗଣ, ଯତନରେ ରାଜା ଯଦି କରିବ ପାଳନ, ହସିକରି ମିଷ୍ଟ ଯଦି କହେ ଦୁଷ୍ଟଜନ । ତଥାପି ପ୍ରାଣର ଶଙ୍କା ତାହାର ଜାଣିବ, ଏହାଙ୍କ ମନର ଭାବ ବୁଝି ନ ପାରିବ । ୧୫ ।

ଅତୋଽହଂ ପର୍ବ୍ବତଶିଖରମାରୁହ୍ୟ ଯୂଥନାଥ ମଭିବାଦୟାମି ।

GPNanda Colln., Digitized by srujanika@gmail.com

ତଥାଽନୁଷ୍ଠିତେ ସତି ଯୂଥନାଥ ଉବାଚ,—କସ୍ତ୍ୱଂ କୁତଃ ସମାୟାତଃ । ସ ବ୍ରୂତେ,—ଦୂତୋଽହଂ, ଭଗବତା ଚନ୍ଦ୍ରେଣ ଭବଦନ୍ତିକଂ ପ୍ରେଷିତଃ । ଯୂଥପତି ରାହ,—କାର୍ଯ୍ୟ ମୁଚ୍ୟତାଂ, ବିଜୟୋ ବଦତି ।

ଅତଏବ ମୁଁ ହାତୀର ଚୂଡ଼ା ପର୍ଯ୍ୟନ୍ତ ଉଠି ଯୂଥନାଥଙ୍କୁ ପ୍ରଣାମ ଜଣାଏ । ସେପରି କଲା ଉତ୍ତାରୁ ଯୂଥପତି କହିଲେ,—ତୁମ୍ଭେ କିଏ ? କେଉଁଠାରୁ ଆସିଅଛ । ଶଶକ କହିଲା—ମୁଁ ଦୂତ, ଭଗବାନଚନ୍ଦ୍ର ମୋତେ ଆପଣଙ୍କ ନିକଟକୁ ପଠାଇଅଛନ୍ତି । ଯୂଥପତି କହିଲା,—କି ନିମନ୍ତେ ଆସିଅଛ କହ ଶଶକ କହିଲା,—

ଉଦ୍ୟତେଷ୍ୱପି ଶସ୍ତ୍ରେଷୁ ଦୂତୋ ବଦତି ନାଽନ୍ୟଥା ।
ସଦୈବାଽବଧ୍ୟଭାବେନ ଯଥାର୍ଥସ୍ୟ ହି ବାଚକଃ । ୧୬ ।

କାଟିବାକୁ ଗଲେ ସୁଦ୍ଧା ତେଜ ପ୍ରାଣଭୟ, ସତକଥା କହେ ଦୂତ ନିର୍ଭୟ ହୃଦୟ । ୧୬ ।

ତଦହଂ ତଦାଜ୍ଞୟା ବ୍ରବୀମି ଶୃଣୁ,—ଯଦେତେ ଚନ୍ଦ୍ରସରୋରକ୍ଷକା-ସ୍ତ୍ୱୟା ନିଃସାରିତାଃ ତଦନୁଚିତଂ କୃତଂ । ଯତୋ ରକ୍ଷକାସ୍ତେ ଶଶକାମଦୀୟାଃ । ଅତଏବ ମେ ଶଶାଙ୍କ ଇତି ପ୍ରସିଦ୍ଧିଃ । ଏବମୁକ୍ତବତି ଦୂତେ ଯୂଥପତି ର୍ଭୟାଦିଦମାହ,—ଦେବ ! ଇଦମଜ୍ଞାନତଃ କୃତଂ । ପୁନ ର୍ନ ଗମିଷ୍ୟାମି । ଦୂତ ଉବାଚ,—ତଦତ୍ର ସରସି ଭଗବନ୍ତଂ ଚନ୍ଦ୍ରମସଂ କୋପାତ୍ କମ୍ପମାନଂ ପ୍ରଣମ୍ୟ ପ୍ରସାଦ୍ୟ ଚ ଗଚ୍ଛ । ତତସ୍ତେନ ରାତ୍ରୌ ନୀତ୍ୱା ତତ୍ର ଜଲେ ଚଞ୍ଚଳଂ ଚନ୍ଦ୍ରବିମ୍ବଂ ଦର୍ଶୟିତ୍ୱା ସ ଯୂଥପତିଃ ପ୍ରଣାମଂ କାରିତଃ । ଦେବ ଅନେନାଜ୍ଞାନାଦପରାଧଃ କୃତଃ, ତତ୍ କ୍ଷମ୍ୟତାଂ, ଇତ୍ୟୁକ୍ତ୍ୱା ତେନ ଶଶକେନ ସ ଯୂଥପତିଃ ପ୍ରସ୍ଥାପିତଃ । ଅତୋଽହଂ ବ୍ରବୀମି,—"ବ୍ୟପଦେଶେଽପି ସିଦ୍ଧିଃ ସ୍ୟାତ୍"—ଇତ୍ୟାଦି । ତତୋ ମୟୋକ୍ତଂ,—ସ ଏବାସ୍ମତ୍ ପ୍ରଭୁ ରାଜହଂସୋ ମହାପ୍ରତାପୋଽତିସମର୍ଥଃ । ତ୍ରୈଲୋକ୍ୟସ୍ୟାପି ପ୍ରଭୁତ୍ୱଂ ତତ୍ର ଯୁଜ୍ୟତେ କିଂ ପୁନଃ-ରାଜ୍ୟମିତି । ତଦାହଂ ତୈଃ, ପକ୍ଷିଭିଃ,—ଦୁଷ୍ଟ କଥମସ୍ମଦ୍ଭୂମୌ ଚରସି—ଇତ୍ୟଭିଧାୟ ରାଜ୍ଞଶ୍ଚିତ୍ରବର୍ଣ୍ଣସ୍ୟ ସମୀପଂ ନୀତଃ । ତତୋ ରାଜ୍ଞଃ ପୁରତୋ ମାଂ ପ୍ରଦର୍ଶ୍ୟ ତୈଃ ପ୍ରଣମ୍ୟୋକ୍ତଂ—ଦେବ ଅବଧୀୟତାଂ । ଏଷ ଦୁଷ୍ଟ ବକୋଽସ୍ମ-

GPNanda Colln., Digitized by srujanika@gmail.com

ଯେନେଶ ଚଲନ୍ତି ଦେବପାଦାନ୍ ଅର୍ଥୟିତେ । ରାଜାହ,— କୋଽୟଂ ଶୁକଃ ସମାୟାତଃ । ତେ ଊଚୁଃ,—ସ୍ୱର୍ଣ୍ଣଗର୍ଭନାମ୍ନୋ ରାଜହଂସସ୍ୟାନୁଚରଃ କର୍ପୂରଦ୍ୱୀପାଦାଗତଃ । ଅଥାଽହଂ ଗୃଧ୍ରେଣ ମନ୍ତ୍ରିଣା ପୃଷ୍ଟଃ,—କସ୍ତତ୍ର ମୁଖ୍ୟୋ ମନ୍ତ୍ରୀତି । ମୟୋକ୍ତଂ,—ସର୍ବଶାସ୍ତ୍ରାର୍ଥପାରଗଃ ସର୍ବଜ୍ଞୋ ନାମ ଚକ୍ରବାକଃ ଗୃଧ୍ରୋ ବ୍ରୂତେ,—ଯୁଜ୍ୟତେ ସ୍ୱଦେଶଜୋଽସୌ । ଯତଃ ।

ଅତଏବ ମୁଁ ତାହାର ଆଦେଶ ଆପଣଙ୍କୁ ଜଣାଉଅଛି ଶୁଣନ୍ତୁ,—"ଏହି ଚନ୍ଦ୍ରସରୋବରରକ୍ଷକ ଶଶକମାନଙ୍କୁ ଉନ୍ମୂଳିତ କରି ତୁମ୍ଭେ ଭଲକାର୍ଯ୍ୟ କରୁନାହଁ । କାରଣ ସରୋବରରକ୍ଷକ ଏହି ସକଳ ଶଶକ ଆମ୍ଭର ପରିଜନ, ଏହିନିମିତ୍ତ ଆମ୍ଭର 'ଶଶାଙ୍କ' ଏହିନାମ ଜଗତରେ ବିଖ୍ୟାତ । ଦୂତ ମୁଖରୁ ଏହିକଥା ଶୁଣି ଯୂଥପତି ଭୀତ ହୋଇ କହିଲା,—ଦେବ ! ମୁଁ ନ ଜାଣିକରି ଏହି କାର୍ଯ୍ୟ କରିଅଛି, ଆଉ କେବେ ଏହି ସ୍ଥାନକୁ ଆସିବି ନାହିଁ । ଦୂତ କହିଲା,—ଭଗବାନ ଚନ୍ଦ୍ର କୋପରେ କମ୍ପିତ ହୋଇ ଏହି ସରୋବରରେ ଅବସ୍ଥାନ କରିଅଛନ୍ତି, ଆପଣ ତାହାଙ୍କୁ ପ୍ରଣାମ ପୂର୍ବକ ପ୍ରସନ୍ନ କରି ଗମନ କରନ୍ତୁ । ଅନନ୍ତର ସେ ରାତ୍ରିକାଳରେ ଯୂଥପତିଙ୍କୁ ସଙ୍ଗେ ନେଇ ସେହି ସରୋବର ଜଳରେ ଚଞ୍ଚଳ ଚନ୍ଦ୍ରବିମ୍ବ ଦେଖାଇଲା, ଏବଂ ତାହାକୁ ପ୍ରଣାମ କରି କହିଲା ଦେବ ! ଏ ଅଜ୍ଞାନ ବଶତଃ ଅପରାଧ କରିଅଛି, ଅତଏବ ଏହାକୁ କ୍ଷମା କରନ୍ତୁ । ଶଶକ ଏହା କହି ସେହି ଯୂଥପତିଙ୍କୁ ବିଦାୟ ଦେଲା । ଏଥିନିମିତ୍ତ କହୁଥିଲି ଯେ— "ପ୍ରବଳପ୍ରତାପ ଯଦି ନରପତି ହୁଏ"—ଇତ୍ୟାଦି । ଏହାପରେ ମୁଁ କହିଲି,—ଆମ୍ଭମାନଙ୍କର ମହାରାଜ ସେହି ରାଜହଂସ ପ୍ରବଳ ପ୍ରତାପ ଓ ଅତ୍ୟନ୍ତ ଉପଯୁକ୍ତ ପାତ୍ର, ସାମାନ୍ୟ ରାଜ୍ୟର କଥା ତ ନୁହେଁ, ସେ ତ୍ରୈଲୋକ୍ୟ ଅଧୀଶ୍ୱର ହେବାର ଯୋଗ୍ୟ । ସେତେବେଳେ ସେହି ପକ୍ଷୀମାନେ,—ଅରେ ଦୁଷ୍ଟ ! ତୁ କାହା ଆଜ୍ଞାରେ ଆମ୍ଭମାନଙ୍କର ଅଧିକାରରେ ଭ୍ରମଣ କରୁଅଛୁ ? ଏହା କହି ମୋତେ ଚିତ୍ରବର୍ଣ୍ଣ ରାଜା ନିକଟକୁ ନେଇଗଲେ । ଅନନ୍ତର ରାଜାଙ୍କ ସମ୍ମୁଖରେ ମୋତେ ଉପସ୍ଥିତ କରାଇ ରାଜାଙ୍କୁ ପ୍ରଣାମକରି କହିଲେ,—ଦେବ ! ଅବଧାନ କରନ୍ତୁ, ଏହି ଦୁଷ୍ଟ ବକ ଆମ୍ଭମାନଙ୍କ ଦେଶରେ ଭ୍ରମଣ କରୁଅଛି । ଅଥଚ ମହାରାଜାଙ୍କୁ ନିନ୍ଦା କରୁଅଛି । ରାଜା କହିଲେ,—ଏ କିଏ ? କେଉଁଠାରୁ ଆସିଅଛି ? । ସେମାନେ

GPNanda Colln., Digitized by srujanika@gmail.com

କହିଲେ,—ଏ ବ୍ୟକ୍ତି ହିରଣ୍ୟଗର୍ଭ ନାମକ ରାଜହଂସର ଅନୁଚର, କର୍ପୂର ଦ୍ୱୀପରୁ ଆସିଅଛି । ପରେ ଗୃଧ୍ର ମନ୍ତ୍ରୀ ମୋତେ ପଚାରିଲା,—ତୁମ୍ଭର ରାଜାର ପ୍ରଧାନ ମନ୍ତ୍ରୀ କିଏ ? । ମୁଁ କହିଲି,—ଅଶେଷଶାସ୍ତ୍ରାର୍ଥପାରଦର୍ଶୀ ସର୍ବଜ୍ଞ-ନାମକ ଚକ୍ରବାକ । ଗୃଧ୍ର କହିଲା,—ହଁ ସେ ବ୍ୟକ୍ତି ଯେତେବେଳେ ରାଜାର ସ୍ୱଦେଶୀୟ, ସେତେବେଳେ ମନ୍ତ୍ରିପଦର ଉପଯୁକ୍ତ ସତ୍ୟ । କାରଣ—

ସ୍ୱଦେଶଜଂ କୁଳାଚାରେ ବିଶୁଦ୍ଧମୁପଧାଶୁଚିଂ ।
ଶାସ୍ତ୍ରଜ୍ଞ ମବ୍ୟସନିନଂ ବ୍ୟଭିଚାରବିବର୍ଜ୍ଜିତଂ । ୧୭ ।
ଅଧୀତ ବ୍ୟବହାରାର୍ଥ ମୌଳଂ ଖ୍ୟାତଂ ବିପଶ୍ଚିତଂ ।
ଅର୍ଥସ୍ୟୋତ୍ପାଦକଂ ସମ୍ୟକ୍ ବିଦଧ୍ୟାନ୍ମନ୍ତ୍ରିଣଂ ନୃପଃ । ୧୮ ।

କୁଳ ଶୀଳ ସଦାଚାରେ ବିଶୁଦ୍ଧ ନିର୍ମଳ, ପୁରୁଷାନୁକ୍ରମେ ଅତି ବିଶ୍ୱାସର ସ୍ଥଳ । ବ୍ୟଭିଚାର ନାହିଁ ଯାର ନାହିଁଟି ବ୍ୟସନ, ସର୍ବଶାସ୍ତ୍ରେ ସୁପଣ୍ଡିତ ପ୍ରତିଷ୍ଠାଭାଜନ । ସମସ୍ତ ଶାସନତନ୍ତ୍ରେ ଅତି ବିଚକ୍ଷଣ, ସୁକୌଶଳେ ସର୍ବ ଅର୍ଥ ଯେ କରେ ସାଧନ, ଏରୂପ ସ୍ୱଦେଶବାସୀ ସୁଯୋଗ୍ୟ ଯେ ଜନ, ତାହାକୁ ନୃପତି ମନ୍ତ୍ରୀ କରିବ ସୁଜନ । ୧୭ । ୧୮ ।

ଅତ୍ରାନ୍ତରେ ଶୁକେନୋକ୍ତଂ,—ଦେବ କର୍ପୂରଦ୍ୱୀପାଦୟୋ ଲଘୁ-ଦ୍ୱୀପା ଜମ୍ବୁଦ୍ୱୀପାନ୍ତର୍ଗତା ଏବ, ତତ୍ରାପି ଦେବପାଦାନାମେବାଧିପତ୍ୟଂ । ତତୋ ରାଜ୍ଞାପ୍ୟୁକ୍ତଂ,—ଏବମେବ । ଯତଃ ।

ଏହାପରେ ଶୁକ ରାଜାଙ୍କୁ କହିଲେ,—ଦେବ ! କର୍ପୂରଦ୍ୱୀପ ପ୍ରଭୃତି କ୍ଷୁଦ୍ର ଦ୍ୱୀପ ସବୁ ଏହି ଜମ୍ବୁଦ୍ୱୀପର ଅନ୍ତର୍ଗତ, ଏହି ସକଳ ଦ୍ୱୀପରେ ମଧ୍ୟ ମହାରାଜଙ୍କର ଅଧିକାର ଅଛି । ତହିଁରେ ରାଜା କହିଲେ,—ହି ସତ୍ୟ କହୁଅଛ । କାରଣ,—

ରାଜା ମତ୍ତଃ ଶିଶୁଶ୍ଚୈବ ପ୍ରମଦା ଧନଗର୍ବ୍ବିତଃ ।
ଅପ୍ରାପ୍ୟମପି ବାଞ୍ଛନ୍ତି କିଂ ପୁନର୍ଲଭ୍ୟମେବ ଯତ୍ । ୧୯ ।

ନରପତି ମତ୍ତଲୋକ ଆଉ ଶିଶୁଜନ, ଐଶ୍ୱର୍ଯ୍ୟ ଗର୍ବିତବ୍ୟକ୍ତି ଆଉ ନାରୀଗଣ । ଅସାଧ୍ୟରେ ଇଚ୍ଛା ଯାହା କରେ ବାରମ୍ବାର, ସାଧ୍ୟ ଯାହା ତାର କଥା କି କହିବ ଆଉ । ୧୯ ।

GPNanda Colln., Digitized by srujanika@gmail.com

ତତୋ ମୟୋକ୍ତଂ,—ଯଦି ବଚସୈବ ତତ୍ରାଽପି ଅସ୍ମତ୍ ପ୍ରଭୋଃ ହିରଣ୍ୟଗର୍ଭସ୍ୟ ସ୍ୱାମ୍ୟମସ୍ତି । ଶୁକ ଉବାଚ,—କଥମତ୍ର ନିର୍ଣ୍ଣୟଃ । ମୟୋକ୍ତଂ—ସଂଗ୍ରାମ ଏବ । ରାଜା ବିହସ୍ୟୋକ୍ତଂ ସ୍ୱପ୍ରଭୁରପି ପ୍ରସ୍ଥାପ୍ୟତାଂ ରାଜାହ,—କଃ ପ୍ରସ୍ଥାପ୍ୟୋ ଦୌତ୍ୟେନ । ଯତଃ ଏବମ୍ଭୂତୋ ଦୂତଃ କାର୍ଯ୍ୟଃ;—

ତାହା ଶୁଣି ମୁଁ କହିଲି,—ଯଦି କେବଳ ମୁଖର କଥାରେ ସେହି ସ୍ଥାନରେ ମହାରାଜାଙ୍କର ଆଧିପତ୍ୟ ସିଦ୍ଧ ହୁଏ, ତେବେ ଏହି ଜମ୍ବୁଦ୍ୱୀପରେ ମଧ୍ୟ ଅମ୍ଭମାନଙ୍କର ପ୍ରଭୁ ହିରଣ୍ୟଗର୍ଭଙ୍କର ଆଧିପତ୍ୟ ଅଛି । ଶୁକ କହିଲା,—ଏ ବିଷୟରେ କିପରି ମୀମାଂସା ହୁଏ ? । ମୁଁ କହିଲି,—ଯୁଦ୍ଧଦ୍ୱାରା ଏହାର ମୀମାଂସା ହୋଇପାରେ । ରାଜା ହାସ୍ୟକରି କହିଲେ,—ତେବେ ତୁମ୍ଭେ ଯାଇ ତୁମ୍ଭମାନଙ୍କର ରାଜାଙ୍କୁ ରଣସଜ୍ଜା କରିବାକୁ କହ । ସେତେବେଳେ ମୁଁ କହିଲି,—ତେବେ ଆପଣ ନିଜ ଦୂତକୁ ପ୍ରେରଣ କରନ୍ତୁ । ରାଜା କହିଲେ,—ଦୌତ୍ୟକାର୍ଯ୍ୟରେ କିଏ ଯିବ ? କାରଣ ଦୂତର ଏହି ସବୁ ଗୁଣ ଥିବା ଉଚିତ,—

ଭକ୍ତୋ ଗୁଣୀ ଶୁଚିର୍ଦକ୍ଷଃ ପ୍ରଗଲ୍‌ଭୋଽବ୍ୟସନୀ କ୍ଷମୀ ।
ବ୍ରାହ୍ମଣଃ ପରମର୍ମଜ୍ଞୋ ଦୂତଃ ସ୍ୟାତ୍ ପ୍ରତିଭାନବାନ୍ । ୨୦ ।

ପ୍ରଭୁଭକ୍ତ ଗୁଣବାନ ବିଶୁଦ୍ଧ ହୃଦୟ, ବ୍ୟସନର ଯେଉଁଲୋକ ଅଧୀନ ନ ହୁଏ । ଦକ୍ଷ ସୁବକ୍ତା ଅଉ କ୍ଷମା ଗୁଣ ଯୁତ, ପର ମର୍ମଜ୍ଞାନ ଯାର କ୍ଷମତା ଅଛି ତ । ସୁଧୀର ପ୍ରତିଭାଶାଳୀ ଜାତିରେ ବ୍ରାହ୍ମଣ, ଦୂତ କାର୍ଯ୍ୟେ ଉପଯୁକ୍ତ ଅଟେ ସେହି ଜନ । ୨୦ ।

ଗୃଧ୍ରୋ ବଦତି,—ସନ୍ତ୍ୟେବ ଦୂତା ବହବଃ । କିନ୍ତୁ ବ୍ରାହ୍ମଣ ଏବ ଦୂତଃ କର୍ତ୍ତବ୍ୟଃ । ଯତଃ ।

ଗୃଧ୍ର କହିଲା—ଏପରି ଗୁଣସମ୍ପନ୍ନ ଅନେକ ଅଛନ୍ତି; କିନ୍ତୁ ବ୍ରାହ୍ମଣଙ୍କୁ ଦୂତ କରିବା କର୍ତ୍ତବ୍ୟ । କାରଣ,—

ପ୍ରସାଦଂ କୁରୁତେ ଭର୍ତ୍ତୁଃ ସମ୍ପତ୍ତିଂ ନାଭିବାଞ୍ଛତି ।
କାଳିମା କାଳକୂଟସ୍ୟ ନାପୈତୀଶ୍ୱର ସଙ୍ଗମାତ୍ । ୨୧ ।

GPNanda Colln., Digitized by srujanika@gmail.com

ଚନ୍ଦ୍ରଣ ପ୍ରଭୁର ତୁଷ୍ଟି କରନ୍ତୁ ସାଧନ, ପ୍ରଭୁଙ୍କ ଐଶ୍ୱର୍ଯ୍ୟପ୍ରତି ନାହିଁ ଅଛ-ଷନ । କାଳକୂଟ ଶିବକଣ୍ଠେ ସଦା ଶୋଭା କରେ; ଶିବଙ୍କ ଶୁଭ୍ରତା କଣ୍ଠୁ କେବେହେଁ ନ ହରେ । ୨୧ ।

ରାଜାହ,—ତତଃ ଶୁକ ଏବ ବ୍ରଜତୁ । ଶୁକ ତ୍ୱମପ୍ୟନେନ ସହ ତତ୍ର ଗତ୍ୱା ଅସ୍ମଦଭିଲଷିତଂ ବ୍ରୂହି—ଶୁକୋଽବଦତ୍ ଯଥାଜ୍ଞାପୟତି ଦେବଃ । କିନ୍ତ୍ୱୟଂ ଦୁର୍ଜ୍ଜନୋ ବକଃ । ଦୁର୍ଜ୍ଜନେନ ସହ ନ ବ୍ରଜାମି । ତଥାହ୍ୟୁକ୍ତଂ ।

ରାଜା କହିଲେ,—ତେବେ ଶୁକ ଗମନ କରୁ । ଶୁକ ତୁମ୍ଭେ ଏହାର ସହିତ ସେ ସ୍ଥାନକୁ ଯାଇ ଆମ୍ଭର ଅଭିପ୍ରାୟ କହ । ଶୁକ କହିଲା,—ଯେ ଆଜ୍ଞା ମହାରାଜ । କିନ୍ତୁ ଏହି ବକ ଅଟେ ଦୁର୍ଜ୍ଜନ, ମୁଁ ଦୁର୍ଜ୍ଜନର ସହିତ କେଉଁ ସ୍ଥାନକୁ ଯିବି ନାହିଁ । କଥିତ ଅଛି ଯେ,—

ଖଳଃ କରୋତି ଦୁର୍ବୃତ୍ତଂ ନୂନଂ ଫଳତି ସାଧୁଷୁ ।
ଦଶାନନୋ ହରେତ୍ ସୀତାଂ ବନ୍ଧନଂ ସ୍ୟାନ୍ମହୋଦଧେଃ । ୨୨ ।

ଦୁର୍ଜ୍ଜନ ଆପଣା ଦୋଷେ ମନ୍ଦକର୍ମ୍ମ କରେ, ଫଳ ତାର ଫଳେ ଯାଇ ସାଧୁର ଉପରେ । ରାବଣ ରାମର ସୀତା କଲାକ ହରଣ, ତହା ଦୋଷେ ସମୁଦ୍ରର ହୋଇଲା ବନ୍ଧନ । ୨୨ ।

ଅପରଞ୍ଚ । ନ ସ୍ଥାତବ୍ୟଂ ନ ଗନ୍ତବ୍ୟଂ ଦୁର୍ଜ୍ଜନେନ ସମଂ କ୍ୱଚିତ୍ ।
କାକ ସଙ୍ଗାଦ୍ଧତୋ ହଂସ ସ୍ତିଷ୍ଠନ୍ ଗଚ୍ଛଂଶ୍ଚ ବର୍ତ୍ତିକଃ । ୨୩ ।

ଆଉ ମଧ୍ୟ—ଦୁର୍ଜ୍ଜନର ସଙ୍ଗେ ନ ରହିବ କଦାଚନ, ତାର ସଙ୍ଗେ କେଉଁ ସ୍ଥାନେ ନ କର ଗମନ; କାକ ସଙ୍ଗେ ଥାଇ ହଂସ ତ୍ୟଜିଲା ଜୀବନ, ବର୍ତ୍ତିକ ମରିଲା ସଙ୍ଗେ କରଣ ଗମନ । ୨୩ ।

ରାଜୋବାଚ,—କଥମେତତ୍ । ଶୁକଃ କଥୟତି । ଅସ୍ତ୍ୟୁଜ୍ଜୟିନୀ-ବର୍ତ୍ମ ପ୍ରାନ୍ତରେ ମହାନ୍ ପିପ୍ପଳବୃକ୍ଷଃ । ତତ୍ର ହଂସକାକୌ ନିବସତଃ । କଦାଚିତ୍ ଗ୍ରୀଷ୍ମ ସମୟେ ପରିଶ୍ରାନ୍ତଃ କଶ୍ଚିତ୍ ପଥିକସ୍ତତ୍ର ତରୁତଳେ ଧନୁଃ କାଣ୍ଡଂ ଚାଧାୟ ସୁପ୍ତଃ । ତତଃ କ୍ଷଣାନ୍ତରେ ତନ୍ମୁଖାଦ୍ବୃକ୍ଷଚ୍ଛାୟାଽପଗତା । ଅନନ୍ତରଂ ସୂର୍ଯ୍ୟତେଜସା ତନ୍ମୁଖଂ ବ୍ୟାପ୍ତମବଲୋକ୍ୟ କୃପୟା ପୁଣ୍ୟାତ୍ମନା ପାପବର୍ଜ୍ଜିତେନ ତତ୍ ପିପ୍ପଳବୃକ୍ଷସ୍ଥିତେନ ହଂସରାଜେନ ପକ୍ଷୌ ପ୍ରସାର୍ଯ୍ୟ

GPNanda Colln., Digitized by srujanika@gmail.com

ପୁନସ୍ତନ୍ମୁଖେଚ୍ଛାୟାକୃତା । ତତୋ ନିର୍ଭରନିଦ୍ରାସୁଖିନା ପଥି ଭ୍ରମଣାକୁଳେନ ପରିଶ୍ରାନ୍ତେନ ପାନ୍ଥେନ ମୁଖବ୍ୟାଦାନଂ କୃତଂ । ଅନନ୍ତରଂ ସ୍ୱଭାବଦୌ-ର୍ଜନ୍ୟାତ୍ ପରସୁଖମସହିଷ୍ଣୁଃ ସ କାକ ସ୍ତସ୍ୟମୁଖେ ପୁରୀଷୋତ୍ସର୍ଗଂ କୃତ୍ୱା ପଳାୟିତଃ । ତତୋ ଯାବଦସାବୁତ୍ଥାୟୋର୍ଦ୍ଧ୍ୱଂ ନିରୀକ୍ଷତେ ତାବତ୍ତେନାଽବଲୋକିତୋ ହଂସଃ କାଣ୍ଡେନ ହତଃ । ଅତୋଽହଂ ବ୍ରବୀମି,—"ନ ସ୍ଥାତବ୍ୟଂ" ଇତ୍ୟାଦି । ତଥାହି ।

ରାଜା ପଚାରିଲେ,—ସେ କିପରି ? ଶୁକ କହିଲା । ଉଜ୍ଜୟିନୀ ପଥର ଏକ ପ୍ରାନ୍ତରେ ଗୋଟିଏ ପ୍ରକାଣ୍ଡ ପିପ୍ପଳ ବୃକ୍ଷ ଅଛି । ସେହି ବୃକ୍ଷରେ ଏକ ରାଜହଂସ ଓ ଏକ କାକ ବାସକରନ୍ତି । ଏକ ପଥିକ ଏକ ଦିନ ଗ୍ରୀଷ୍ମକାଳରେ ପରିଶ୍ରାନ୍ତ ହୋଇ ସେହି ବୃକ୍ଷତଳେ ଧନୁର୍ବାଣ ରଖି ଛାୟାରେ ପଡ଼ି ନିଦ୍ରାଗଲା । ଅନନ୍ତର ତାହାର ମୁଖରେ ରୌଦ୍ର ଲାଗିବାର ଦେଖି ସେହି ବୃକ୍ଷବାସୀ ପୁଣ୍ୟାତ୍ମା ନିଷ୍ପାପ ରାଜହଂସ ଦୟାର୍ଦ୍ର ଚିତ୍ତରେ ଆପଣା ପକ୍ଷିଦୁଇଟି ବିସ୍ତାର କରି ପୁନର୍ବାର ତାହା ମୁଖରେ ଛାୟା ପ୍ରଦାନ କଲା । ପଥଭ୍ରମଣଦ୍ୱାରା ପାନ୍ଥ ନିତାନ୍ତ କ୍ଳାନ୍ତ ଥିଲା, ଏହେତୁ ପରମସୁଖରେ ନିଦ୍ରା ଯାଉଁ ମୁଖବ୍ୟାଦାନ କଲା । ପଥିକ ମୁଖ ବ୍ୟାଦାନ କରିବାମାତ୍ରେକ ପରସୁଖଦ୍ୱେଷୀ ସେହି ଦୁଃଶୀଳ କାକ ପଥିକ ମୁଖରେ ମଳତ୍ୟାଗ କରି ପଳାୟନ କଲା । ତତ୍କ୍ଷଣେ ପଥିକର ନିଦ୍ରାଭଙ୍ଗ ହେବାରୁ ସେ ସେଠାରେ ସେହି ରାଜହଂସକୁ ଦେଖିଲାକ୍ଷଣି ବାଣଦ୍ୱାରା ତାହାର ପ୍ରାଣ ସଂହାର କଲା । ଏହି ନିମିତ୍ତ ମୁଁ କହୁଅଛି ଯେ, ଦୁର୍ଜ୍ଜନର ସହିତ ସହବାସ କରିବ ନାହିଁ । କଥିତ ଅଛି ଯେ,—

ତ୍ୟଜ ଦୁର୍ଜ୍ଜନସଂସର୍ଗଂ ଭଜ ସାଧୁସମାଗମଂ ।
କୁରୁ ପୁଣ୍ୟମହୋରାତ୍ରଂ ସ୍ମର ନିତ୍ୟମନିତ୍ୟତାଂ । ୨୪ ।

ଦୁର୍ଜ୍ଜନର ସହବାସ କର ହେ ବର୍ଜ୍ଜନ, ସାଧୁସଙ୍ଗେ ସଦାକାଳ କର ହେ ହରଣ । ସଂସାରର ଅନିତ୍ୟତା କର ହେ ସ୍ମରଣ, ଅହୋରାତ୍ର ପୁଣ୍ୟକର୍ମ୍ମ କର ଆଚରଣ । ୨୪ ।

ଦେବ ବର୍ତ୍ତିକବାର୍ତ୍ତାମପି କଥୟାମି । ଏକଃ କାକୋ ବୃକ୍ଷଶାଖାୟାଂ ସ୍ଥିତଃ । ବର୍ତ୍ତିକସ୍ତ୍ୱଧସ୍ତାଦ୍ ଭୂମୌ ନିବସତି । ଏକଦା ସର୍ବେ ପକ୍ଷିଣୋ

GPNanda Colln., Digitized by srujanika@gmail.com

ଭଗବତୋ ଗରୁଡସ୍ୟ ଯାତ୍ରାପ୍ରସଙ୍ଗେନ ସମୁଦ୍ରତୀରଂ ପ୍ରଚଳିତାଃ । ତତ୍ର କାକେନ ସହ ବର୍ତ୍ତକଶ୍ଚଳିତଃ । ଅଥ ଗଚ୍ଛତୋ ଗୋପାଳସ୍ୟ ମସ୍ତକାବସ୍ଥିତ-ଦଧିଭାଣ୍ଡାତ୍ ବାରଂବାରଂ ତେନ କାକେନ ଦଧି ଖାଦ୍ୟତେ । ତତୋ ଯାବଦସୌ ଦଧିଭାଣ୍ଡଂ ଭୂମୌ ନିଧାୟ ଊର୍ଦ୍ଧ୍ୱମବଲୋକୟତି, ତାବତ୍ ତେନ କାକ-ବର୍ତ୍ତକୌ ଦୃଷ୍ଟୌ । ତତସ୍ତେନ ଖେଟିତଃ କାକଃ ପଳାୟିତଃ । ଅତୋଽହଂ ବ୍ରବୀମି,—"ନ ଗନ୍ତବ୍ୟଂ"—ଇତ୍ୟାଦି । ତତୋ ମୟୋକ୍ତଂ—ଭ୍ରାତଃ ଶୁକ କିମେବଂ ବ୍ରବୀଷି । ମାଂ ପ୍ରତି ଯଥା ଶ୍ରୀମଦ୍ଦେବପାଦାସ୍ତଥା ଭବାନପି ଶୁକୋ ବ୍ରୂତେ,—ଅସ୍ତ୍ୟେବଂ । କିନ୍ତୁ;—

ମହାରାଜ ! ବର୍ତ୍ତିକର କଥା କହୁଅଛି ଶୁଣନ୍ତୁ । ଗୋଟିଏ କାକ ବୃକ୍ଷଶାଖାରେ ବାସ କରେ । ଏକ ସମୟରେ ସମସ୍ତ ପକ୍ଷିମାନେ ଭଗବାନ୍ ଗରୁଡ଼ଙ୍କର ଯାତ୍ରା ମହୋତ୍ସବ ଉପଲକ୍ଷରେ ସମୁଦ୍ରତୀରକୁ ଗମନ କଲେ, ବର୍ତ୍ତିକ ସେହି କାକର ସହିତ ସେହି ସ୍ଥାନକୁ ଗଲା । ଏକ ଗୋପାଳ ମସ୍ତକରେ ଦଧି ଭାଣ୍ଡ ନେଇ ଯାଉଥିଲା । କାକ ବାରମ୍ବାର ତାହାର ମସ୍ତକ ସ୍ଥିତ ଦଧିଭାଣ୍ଡରୁ ଦଧି ଖାଇବାକୁ ଲାଗିଲା । ତହିଁରେ ଗୋପାଳ ସେହି ଦଧିଭାଣ୍ଡ ଭୂମିରେ ଥୋଇ ଊର୍ଦ୍ଧ୍ୱଦିଗକୁ ଦୃଷ୍ଟିପାତ କରିବା ମାତ୍ରେ ସେହି କାକ ଓ ବର୍ତ୍ତିକକୁ ଦେଖିଲା । ସେ ହୁବୁଡ଼ାଇ ଦେବା ମାତ୍ରେ କାକ ପଳାଇଗଲା । ବର୍ତ୍ତିକ ସ୍ୱଭାବତଃ ଅତି ନିରୀହ ଓ ଅସ୍ତେ ଗମନ କରେ ଏଥି ନିମିତ୍ତ ଗୋପାଳ ତାହାକୁ ଧରି ବଧ କଲା । ଏଥି ନିମିତ୍ତ କହୁଅଛି ଯେ,—ଦୁର୍ଜ୍ଜନର ସହିତ କୌଣସି ଅଡ଼େ ଯିବ ନାହିଁ । ପରେ ମୁଁ କହିଲି,—ଭାଇ ଶୁକ ! ଆପଣ ମୋହ ବିଷୟରେ ଏରୂପ ଅପେକ୍ଷା କରୁଅଛ କାହିଁକି ? ମୋହ ନିକଟରେ ମହାରାଜ ଯେପରି ଆପଣ ମଧ ସେହିପରି । ଶୁକ କହିଲା, ତାହା ସତ୍ୟ ଅଟେ । କିନ୍ତୁ,—

ଦୁର୍ଜ୍ଜନୈରୁଚ୍ୟମାନାନି ସମ୍ମତାନି ପ୍ରିୟାଣ୍ୟପି ।
ଅକାଳକୁସୁମାନୀବ ଭୟଂ ସଞ୍ଜନୟନ୍ତି ହି । ୨୫ ।

ପ୍ରିୟକଥା ଯଦି ଅବା ଦୁର୍ଜ୍ଜନ କହଇ, ଅକାଳକୁସୁମ ସମ ସେ ଶୁଭ ନୁହଇ । ୨୫ ।

GPNanda Colln., Digitized by srujanika@gmail.com

ଦୁର୍ଜ୍ଜନତ୍ୱଂ ଚ ତବ ବାଗ୍‌ବ୍ୟାପାରାଦେବ ପ୍ରତ୍ୟକ୍ଷୀକୃତଂ ।
ଯଦନୟୋର୍ଭୂପାଳୟୋର୍ବିଗ୍ରହେ ଭବଦ୍ବଚନମେବ ନିଦାନଂ । ପଶ୍ୟ ।

ଅଉ ତୁମ୍ଭେ ଯେ ଦୁର୍ଜ୍ଜନ ତାହା ତୁମ୍ଭ କଥାରୁ ପ୍ରମାଣ ହେଉଅଛି, ଯାହିଁକିନା କେବଳ ତୁମ୍ଭର କଥା ନିମିତ୍ତ ଏହି ଦୁଇ ରଜାଙ୍କ ମଧ୍ୟରେ ଅକାରଣରେ ବିରୋଧ ଘଟୁଅଛି, ଦେଖ ।

ପ୍ରତ୍ୟକ୍ଷେଽପି କୃତେ ଦୋଷେ ମୂର୍ଖଃ ସାନ୍ତ୍ୱେନ ତୁଷ୍ୟତି ।
ରଥକାରେ ନିଜାଂ ଭାର୍ଯ୍ୟାଂ ସଜାରାଂ ଶିରସାଽକରୋତ୍ । ୧୨

ସ୍ୱଚକ୍ଷୁରେ ଦେଖି ଦୋଷ କରେ ଯଦି ସ୍ନେହ, ତୋଷାମୋଦେ ମୂର୍ଖ ପୁନଃ ପାଏ ପରିତୋଷ । ମୂର୍ଖ ଏକ ରଥକାର ଭୁଲିଣ କଥାରେ, ଉପପତିସହ ଭାର୍ଯ୍ୟା କଲାକ ମଥାରେ । ୧୨ ।

ରାଜୋବାଚ,—କଥମେତତ୍ । ଶୁକଃ କଥୟତି । ଅସ୍ତି ଶ୍ରୀନଗରେ ମନ୍ଦମତି ର୍ନାମ ରଥକାରଃ । ସ ଚ ସ୍ୱଭାର୍ଯ୍ୟାଂ ବନ୍ଧକୀଂ ଜାନାତି । କିନ୍ତୁ ଜାରେଣ ସମଂ ଏକସ୍ଥାନେ ସ୍ୱଚକ୍ଷୁଷା ନ ପଶ୍ୟତି । ତତୋଽସୌ ରଥକାରୋଽହମନ୍ୟଂ ଗ୍ରାମଂ ଗଚ୍ଛାମି ଇତ୍ୟୁକ୍ତ୍ୱା ପ୍ରଚଳିତଃ । ସ କିୟଦ୍ଦୂରଂ ଗତ୍ୱା ନିଭୃତଂ ପୁନରାଗତ୍ୟ ସ୍ୱଗୃହେ ଖଟ୍ୱାତଳେ ପତିତ୍ୱା ସ୍ଥିତଃ । ଅଥ ମମ ଭର୍ତ୍ତା ଗ୍ରାମାନ୍ତରଂ ଗତ ଇତ୍ୟୁପଜାତବିଶ୍ୱାସୟା ତଦ୍ବଧ୍ୱା ଜାରଃ ସନ୍ଧ୍ୟାକାଳ ଏବାହୂତଃ । ପଶ୍ଚାତ୍ ତେନ ଜାରେଣ ସମଂ ତସ୍ୟାଂ ଖଟ୍ୱାୟାଂ ନିର୍ଭରଂ କ୍ରୀଡ଼ନ୍ତୀ ଖଟ୍ୱାଧଃସ୍ଥିତସ୍ୟ ସ୍ୱାମିନଃ କିଞ୍ଚିଦଙ୍ଗସ୍ପର୍ଶାତ୍ ସ୍ୱାମିନଂ ମାୟାବିନଂ ବିଜ୍ଞାୟ ସା ବିଷଣ୍ଣାଽଭବତ୍ । ତତୋ ଜାରେଣୋକ୍ତଂ,—କିମିତି ମୟା ସହାଽଦ୍ୟ ନିର୍ଭରଂ ନ ରମସେ । ବିସ୍ମିତେବ ପ୍ରତିଭାସି । ଅଥ ତୟୋକ୍ତଂ—ଜ୍ଞୋଽସୌ ମେ ପ୍ରାଣେଶ୍ୱରଃ ଯେନ ମମାକୌମାରଂ ସଖ୍ୟଂ, ସୋଽଦ୍ୟ ଗ୍ରାମାନ୍ତରଂ ଗତଃ । ତେନ ବିନା ସକଳଜନପୂର୍ଣ୍ଣୋଽପ୍ୟୟଂ ଗ୍ରାମୋ ମାଂ ପ୍ରତ୍ୟରଣ୍ୟବତ୍ ପ୍ରତିଭାତି । କିଂଭାବି, ତତ୍ର ପରସ୍ଥାନେ କିଂ ଖାଦିତବାନ୍, କଥଂ ବା ପ୍ରସୁପ୍ତଃ, ଇତ୍ୟସ୍ମଦ୍ଧୃଦୟଂ ବିଦୀର୍ଯ୍ୟତେ । ଜାରେଣୋକ୍ତଂ,—ତବ କିଂ ଏବଂବିଧା ସ୍ନେହଭୂମିଃ ସ ତେ ଭର୍ତ୍ତା ରଥକାରଃ । ବନ୍ଧକୀ ବ୍ରୂତେ, ରେ ବର୍ବର କିଂ ବଦସି । ଶୃଣୁ ।



GPNanda Colln., Digitized by srujanika@gmail.com

ରାଜା କହିଲେ,—ସେ କିପରି ? ଶୁକ କହିଲା, ଶ୍ରୀନଗରରେ ମଦମତ ନାମରେ ଏକ ରଥକାର ବାସକରେ । ସେ ଆପଣା ଭାର୍ଯ୍ୟାକୁ କୁଳଟା ବୋଲି ଜାଣେ, କିନ୍ତୁ କେବେ ମୁଦ୍ଧା ତାହାକୁ ଉପପତି ସହିତ ଏକ ସଙ୍ଗରେ ଥିବାର ସ୍ୱଚକ୍ଷୁରେ ଦେଖିନାହିଁ । ଦିନକରେ ସେହି ରଥକାର ସ୍ତ୍ରୀକୁ କହିଲା,—ମୁଁ ଆଜି ଅନ୍ୟସ୍ଥାନକୁ ଯାଉଅଛି । ସେ ଏହା କହି ଘରୁ ଯାହା ଭଳି ବାହାରିଲା କିନ୍ତୁ କିଛିଦୂର ଯାଇ ପୁନର୍ବାର ଗୋପନରେ ଘରକୁ ଫେରି ଆସି ସ୍ୱୟଂ ଗୃହସ୍ଥ ଖଟତଳେ ଲୁଚି ରହିଲା । ତାହା ସ୍ତ୍ରୀର ମନରେ ଦୃଢ଼ ବିଶ୍ୱାସ ଥିଲା ଯେ ତାହାର ପତି ଅନ୍ୟ ଗ୍ରାମକୁ ଯାଉଅଛି । ଏଥିନିମିତ୍ତ ସେ ଆପଣା ଉପପତିକୁ ପ୍ରତିଦିନ ସନ୍ଧ୍ୟାକାଳରେ ଆସିବାକୁ କହିଲା । ଅନନ୍ତର ସେ ଯେତେବେଳେ ଖଟଉପରେ ଆପଣାର ଉପପତିକୁ ନେଇ ରତିକ୍ରୀଡ଼ାରେ ରତ ହେଲା, ସେତେବେଳେ ଖଟ-ତଳରେ ତାହାର ପତି ସଙ୍ଗରେ ନିଜର ଅଙ୍ଗ ଈଷତ୍ ସ୍ପର୍ଶ ହେବାରୁ ବୁଝି ପାରିଲା ଯେ ତାହାର ପତି କପଟତା କରି ଲୁଚି ରହିଅଛି । ସେଥିରେ ସେହି ନାରୀ ଅତ୍ୟନ୍ତ ବିଷଣ୍ଣ ହେଲା । ତାହାର ଉପପତି ପଚାରିଲା,—ଆଜି ତୁମ୍ଭେ ନିର୍ଭର ସହିତ ମୋ ସଙ୍ଗରେ ବିହାର କରୁନାହଁ କାହିଁକି ? ଆଜି ଏପରି ବିସ୍ମିତ ହୋଇ ରହିଲ କାହିଁକି ? ଅନନ୍ତର ସେ ସ୍ତ୍ରୀ ଉତ୍ତର କଲା,—ବାଲ୍ୟାବଧି ଯାହା ସହିତ ମୋହର ପ୍ରଣୟ, ମୋର ସେହି ପ୍ରାଣେଶ୍ୱର ପତି ଆଜି ଅନ୍ୟଗ୍ରାମକୁ ଯାଇଅଛନ୍ତି । ଏହି ଗ୍ରାମ ସମସ୍ତ ଲୋକପୂର୍ଣ୍ଣ ଥିଲେ ମୁଦ୍ଧା ସେ ନ ଥିବାରୁ ଅରଣ୍ୟ ନ୍ୟାୟ ବୋଧ ହେଉଅଛି । ଅହା ! ସେ ପରସ୍ଥାନରେ ରହିଲେ ! ସେଠାରେ ତାଙ୍କର କଣ ହେଲା ! କଣ ଖାଇଲେ ବା କେଉଁଠି ଶୋଇଲେ ! ଏ ସବୁ ଦୁର୍ଭାବନାରେ ମୋର ହୃଦୟ ବିଦୀର୍ଣ୍ଣ ହେଉଅଛି । ଉପପତି କହିଲା,—ତେବେ କଣ ସ୍ୱାମୀକୁ ଏତେ ଭଲ ପାଅ ? ସେ ତୁମ୍ଭ ସହିତ କଳହ କରେ ? କୁଳଟା କହିଲା,—ଅରେ ବର୍ବର ! କଣ କହୁଅଛୁ ? ଶୁଣୁ ।—

ପରୁଷାଣ୍ୟପି ପ୍ରୋକ୍ତା ଯା ଦୃଷ୍ଟା ବା କ୍ରୁଦ୍ଧ ଚକ୍ଷୁଷା ।
ସୁପ୍ରସନ୍ନମୁଖୀ ଭର୍ତ୍ତୁଃ ସା ନାରୀ ଧର୍ମଭାଜନଂ । ୧୨ ।

GPNanda Colln., Digitized by srujanika@gmail.com

ପତି ଯଦି କ୍ରୋଧାକ୍ଷିରେ ଚାହେଁ ବାରମ୍ବାର, ନିତାନ୍ତ ନିଷ୍ଠୁର ହେବେ ହବେ ତିରସ୍କାର । ତଥାପି ବଦନ ଯାର ସୁପ୍ରସନ୍ନ ରହେ, ଧାର୍ମିକା ରମଣୀ ତାଙ୍କୁ ଜାଣିବ ନିଶ୍ଚୟେ । ୨୭ ।

ଅପରଞ୍ଚ । ନଗରସ୍ଥୋ ବନସ୍ଥୋ ବା ପାପୋ ବା ଯଦି ବା ଶୁଚିଃ ।
ଯାସାଂ ସ୍ତ୍ରୀଣାଂ ପ୍ରିୟୋ ଭର୍ତ୍ତା ତାସାଂ ଲୋକମହୋଦୟାଃ । ୨୮ ।

ପତି ଯଦି ନଗରେ ବା ଅରଣ୍ୟରେ ଥାଏ, ସାଧୁ କିମ୍ବା ଅତିବଡ଼ ମହା-ପାପୀ ହୁଏ । ତାର ପ୍ରତି ଯେ ନାରୀର ଅଚଳା ଭକତି, ପରମ ଐଶ୍ୱର୍ଯ୍ୟମୟ ସ୍ୱର୍ଗେ ତାର ଗତି । ୨୮ ।

ଅନ୍ୟଚ୍ଚ ।

ଭର୍ତ୍ତାହି ପରମଂ ନାର୍ଯ୍ୟା ଭୂଷଣଂଭୂଷଣୈର୍ବିନା ।
ଏଷାବିରହିତା ତେନ ଶୋଭନାଽପି ନ ଶୋଭତେ । ୨୯ ।

ପତିହିଁ ନାରୀର ପକ୍ଷେ ଭୂଷଣର ସାର, ଯହିଁ ଶୋଭା ପାଏ ନାହିଁ ସୁନା ଅଳଙ୍କାର । ଥିଲେ ମଧ ରୂପ ଆଉ ଶତଅଳଙ୍କାର, ପତିର ବିରହେ ହୁଏ ସମସ୍ତ ଅନ୍ଧାର । ୨୯ ।

ତ୍ୱଂ ଚ ଜାରଃ ପାପମତିଃ ମନୋଲୌଲ୍ୟାତ୍ ପୁଷ୍ପତାମ୍ବୂଳସଦୃଶା କଦାଚିତ୍ ସେବ୍ୟସେ । ସ ଚ ମେ ସ୍ୱାମୀ ମାଂ ବିକ୍ରେତୁଂ ଦେବେଭ୍ୟୋ ବ୍ରାହ୍ମଣେଭ୍ୟୋ ବା ଦାତୁଂ ସମର୍ଥଃ । କିଂ ବହୁନା, ତସ୍ମିନ୍ ଜୀବତି ଜୀବାମି, ତନ୍ମରଣେ ଚାନୁମରଣଂ କରିଷ୍ୟାମି । ଇତ୍ୟେଷ ମେ ନିଶ୍ଚୟଃ । ଯତଃ ।

ତୁମ୍ଭ ପାପିଷ୍ଠ ଉପପତି ମାତ୍ର, କେବଳ ମନର ଚାଞ୍ଚଲ୍ୟ ବଶତଃ ପୁଷ୍ପ ଓ ତାମ୍ବୂଳ ପରି ତୋତେ କେବେ୨ ଭୋଗ କରେ । ସେ ମୋର ପ୍ରାଣପତି, ସେ ମୋତେ ମଧ ବିକ୍ରୟ କରିପାରନ୍ତି, ଏବଂ ଦେବତା ଓ ବ୍ରାହ୍ମଣଙ୍କୁ ମଧ ଦାନ କରିପାରନ୍ତି । ଅଧିକ କଣ କହିବି, ସେ ଜୀବିତ ଥିଲେ ମୁଁ ଜୀବିତ ଥିବି ଏବଂ ତାହାଙ୍କର ମୃତ୍ୟୁରେ ମୁଁ ପ୍ରାଣ ତ୍ୟାଗ କରିବି । ଏହା ମୋହର ଦୃଢ଼ ସଙ୍କଳ୍ପ । କାରଣ,—

ତିସ୍ରଃ କୋଟ୍ୟୋଽର୍ଦ୍ଧକୋଟୀ ଚ ଯାନି ଲୋମାନି ମାନବେ ।
ତାବତ୍ କାଲଂ ବସେତ୍ ସ୍ୱର୍ଗେ ଭର୍ତ୍ତାରଂ ଯାଽନୁଗଚ୍ଛତି । ୩୦ ।

GPNanda Colln., Digitized by srujanika@gmail.com

ଯେ ସହଗମନ କରେ ପତିମରଣେ, ତାହାଙ୍କୁହିଁ ସତୀ ନାରୀ କହନ୍ତି ସଜ୍ଜନେ । ସାର୍ଦ୍ଧତ୍ରିକୋଟି ଲୋମ ଅଛି ନରଦେହେ, ତେତେ ବର୍ଷ ସ୍ୱର୍ଗେ ତାର ବସତି ନିଶ୍ଚୟେ । ୩୦ ।

ଅନ୍ୟଚ । ବ୍ୟାଳଗ୍ରାହୀ ଯଥା ବ୍ୟାଳଂ ବଳାଦୁଦ୍ଧରତେ ବିଲାତ୍ ।
ତଦ୍ବଦ୍ ଭର୍ତ୍ତାରମାଦାୟ ତେନୈବସହ ମୋଦତେ । ୩୧ ।

ଅନୁବାଦ—ସାପୁଆ ସାପକୁ ଗାତୁଁ ବାହାର କରଣ, ଅନେକ ପ୍ରକାରେ ଖେଳେ ତାହାସଙ୍ଗେ ପୁଣ । ସେପରି ସଙ୍କଟୁ କରି ପତିର ଉଦ୍ଧାର, ସତୀନାରୀ ତାରସଙ୍ଗେ କରେ ସେ ବିହାର । ୩୧ ।

ଅପରଞ୍ଚ—ଚିତୌପରିଷ୍ୱଜ୍ୟ ବିଚେତନଂ ପତିଂପ୍ରିୟାହି ଯା ମୁଞ୍ଚତି ଦେହମାତ୍ମନଃ ।
କୃତ୍ୱାଽପି ପାପଂ ଶତଲକ୍ଷମପ୍ୟସୌ ପତିଂ ଗୃହୀତ୍ୱା ସୁରଲୋକମାପ୍ନୁୟାତ୍ ।

ଅନୁବାଦ । ଚିତାନଳେ ପତିଦେହ କରି ଆଲିଙ୍ଗନ, ଯେ ନାରୀ ଆପଣା ଦେହ କରେ ବିସର୍ଜ୍ଜନ । କୋଟି ମହାପାପୁଁ ସେହି ବିମୁକ୍ତ ହୋଇଣ, ଯାଏ ସେ ଅମର ଧାମେ ପତିଙ୍କି ନେଇଣ । ୩୨ ।

ଯତଃ । ଯସ୍ମୈ ଦଦ୍ୟାତ୍ ପିତା ତ୍ୱେନାଂ ଭ୍ରାତା ବାଽନୁମତେ ପିତୁଃ ।
ତଂ ଶୁଶ୍ରୂଷେତ ଜୀବନ୍ତଂ ସଂସ୍ଥିତଂ ଚ ନ ଲଙ୍ଘୟେତ୍ । ୩୩ ।

କାରଣ । ପିତା କିମ୍ବା ପିତାର ଆଜ୍ଞାରେ ସହୋଦର, ଅବଳାକୁ କରେ ସମ୍ପ୍ରଦାନ ଯାହା କର । ନାରୀ ତାକୁ ଚିରକାଳ ଯତନେ ସେବିବ, ମଲେ ମଧ୍ୟ ତାହା ବିନା ଅନ୍ୟ ନ ଭାବିବ । ୩୩ ।

ଏତତ୍ ସର୍ବଂ ଶ୍ରୁତ୍ୱା ମନ୍ଦମତିଃ ସ ରଥକାରଃ—ଧନ୍ୟୋଽହଂ ଯସ୍ୟ-ତାଦୃଶୀ ଭାର୍ଯ୍ୟା ସ୍ନେହବତୀ ପ୍ରିୟବାଦିନୀ ଇତିମନସି ନିଧାୟ ତାଂ ଖଟ୍ୱାଂ ସ୍ତ୍ରୀପୁରୁଷସହିତାଂ ମୂର୍ଦ୍ଧ୍ନି ଧୃତ୍ୱା ସାନନ୍ଦଂ ନର୍ତ୍ତିତବାନ୍ ଅତୋଽହଂ ବ୍ରବୀମି,—"ପ୍ରତ୍ୟକ୍ଷେଽପି କୃତେ ଦୋଷେ"—ଇତ୍ୟାଦି । ତତୋଽହଂ ତେନ ସଜ୍ଞ ଯଥାବ୍ୟବହାରଂ ସମ୍ପୂଜ୍ୟ ପ୍ରସ୍ଥାପିତଃ । ଶୁକୋଽପି ମମପଶ୍ଚାଦାଗଚ୍ଛନ୍ନାସ୍ତେ । ଏତତ୍ସର୍ବଂ ଜ୍ଞାତ୍ୱା ଯଥାକାର୍ଯ୍ୟମନୁସନ୍ଧୀୟତାଂ । ଚକ୍ରବାକୋ ବିହସ୍ୟାହ,—ଦେବ ବକେନ ତାବନ୍ତ୍ରଦେଶାନ୍ତରଂଗତ୍ୱା ଯଥାଶକ୍ତି ରାଜକାର୍ଯ୍ୟମନୁଷ୍ଠିତଂ । କିନ୍ତୁ ସ୍ୱଭାବ ଏବ ମୂର୍ଖାଣାଂ । ଯତଃ ।

GPNanda Colln., Digitized by srujanika@gmail.com

ସ୍ତ୍ରୀର ଏହି ସକଳ କଥା ଶୁଣିକରି ସେହି ରଥକାର ମନେ ମନେ ଭାବିଲା,—ଅହୋ ! ଅମୃର ଗୃହିଣୀ ଏପରି ପ୍ରଣୟିନୀ ଓ ପ୍ରିୟବାଦିନୀ ! ମୋହର କି ସୌଭାଗ୍ୟ । ସେହି ମନ୍ଦବୁଦ୍ଧି ଏହିରୂପ ଭାବି ସ୍ତ୍ରୀ ପୁରୁଷ ସମେତ ସେହି ଖଟ୍ଟମୁଣ୍ଡରେ ନେଇ ନୃତ୍ୟଗୀତ କଲା । ଏଥିଲାଗି ମୁଁ କହୁଥିଲି ଯେ,—"ପ୍ରତ୍ୟକ୍ଷରେ ଦେଖି ଦୋଷ କରେ ଯଦି ସ୍ନେହ" ଇତ୍ୟାଦି । ଅନନ୍ତର ସେହି ରାଜା ଯଥୋଚିତ ଅମୃର ସତ୍କାର କରି ମୋତେ ବିଦାୟ ଦେଲେ । ଶୁକମଧ୍ୟ ମୋହର ସମଭିବ୍ୟାହାରରେ ଏହି ସ୍ଥାନକୁ ଆସିଅଛନ୍ତି । ଅତଏବ ଏହି ସମସ୍ତ ଜାଣିକରି ବର୍ତ୍ତମାନ ଯାହା କର୍ତ୍ତବ୍ୟ ହୁଏ ତାହା ଅବଧାରଣ କରିବା । ଚକ୍ରବାକ ହାସ୍ୟକରି କହିଲା,—ମହାରାଜ ! ବକ ବିଦେଶ ଯାଇ ବିଲକ୍ଷଣ ରାଜକାର୍ଯ୍ୟ ସାଧନ କରିଅଛି । ଅଥବା ମୂର୍ଖର ସ୍ୱଭାବ ଏହି ଯେ,—

ଶତଂ ଦଦ୍ୟାନ୍ନ ବିବଦେଦିତି ବିଜ୍ଞସ୍ୟ ସମ୍ମତଂ ।
ବିନା ହେତୁମପି ଦ୍ୱନ୍ଦ୍ୱମେତନ୍ମୂର୍ଖସ୍ୟଲକ୍ଷଣଂ । ୩୪ ।

ଶତ ଶତ ସ୍ୱାର୍ଥତ୍ୟାଗ କରିଣ ସ୍ୱୀକାର, ବିଜ୍ଞଜନ ବିବାଦକୁ କରେ ପରିହାର । ଅଜ୍ଞ ଯେହୁ ମୂର୍ଖଲୋକ ସେହୁ ଅକାରଣ, ବିବାଦେ ପ୍ରବୃତ୍ତହୁଏ ଅପର ସଙ୍ଗେଣ । ୩୪ ।

ରାଜାହ—ଅଲମନେନାତିକ୍ରାନ୍ତୋପାଲମ୍ଭେନ ! ପ୍ରସ୍ତୁତମନୁସନ୍ଧୀୟତାଂ । ଚକ୍ରବାକୋ ବ୍ରୂତେ । ଦେବ ବିଜନେ ବ୍ରବୀମି । ଯତଃ ।

ରାଜାକହିଲେ,—ଯାହା ହୋଇ ଯାଇଅଛି ତାହା ନିମିତ୍ତ ଆଉ ତିରସ୍କାର କରି କି ଫଳ ? ବର୍ତ୍ତମାନ ଯାହା କର୍ତ୍ତବ୍ୟ ତାହା ସ୍ଥିର କର । ଚକ୍ରବାକ କହିଲା,—ମହାରାଜ ! ନିର୍ଜ୍ଜନରେ କହିବି । କାରଣ,—

ବର୍ଣ୍ଣାକାର ପ୍ରତିଧ୍ୱାନୈ ର୍ନେତ୍ରବକ୍ତ୍ରବିକାରତଃ ।
ଅପ୍ୟୂହନ୍ତି ମନୋଧୀରା ସ୍ତସ୍ମାଦ୍ରହସିମନ୍ତ୍ରୟେତ୍ । ୩୪ ।

ଆକାର ଅଥବା ବର୍ଣ୍ଣ କରି ଦରଶନ । କିମ୍ବା ପ୍ରତିଧ୍ୱନି ମାତ୍ର କରିଣ ଶ୍ରବଣ । ଅଥବା ନେତ୍ର କିମ୍ବା ମୁଖର ବିକାରେ, ବୁଦ୍ଧିମାନ ମନୋଭାବ ବୁଝିବାକୁ ପାରେ । ଅତଏବ ସଙ୍ଗୋପନେ ଅତି ସାବଧାନେ, ମନ୍ତ୍ରଣା କରିବ ଯାହା ଅନ୍ୟ ନାହିଁ ଜାଣେ । ୩୫ ।

GPNanda Colln., Digitized by srujanika@gmail.com

ତତୋ ରାଜାମନ୍ତ୍ରୀ ଚ ସ୍ଥିତୌ ତତ୍ର । ଅନ୍ୟେଽନ୍ୟତ୍ରଗତାଃ । ଚକ୍ରବାକୋ ବ୍ରୂତେ—ଦେବ ଅହମେବଂ ଜାନାମି—କସ୍ୟାପ୍ୟସ୍ମନ୍ନିୟୋଗିନଃ ପ୍ରେରଣମସ୍ତି ବକେନେଦମନୁଷ୍ଠିତଂ । ଯତଃ ।

ଅନନ୍ତର କେବଳ ରାଜା ଓ ମନ୍ତ୍ରୀ ସେଠାରେ ରହିଲେ, ଆଉ ସମସ୍ତେ ସେ ସ୍ଥାନରୁ ଉଠିଗଲେ । ସେତେବେଳେ ଚକ୍ରବାକ ମନ୍ତ୍ରୀ ରାଜାଙ୍କୁ କହିଲା— ମହାରାଜ ! ମୋହର ଜ୍ଞାନ ହେଉଅଛି ଯେ ଅମ୍ଭମାନଙ୍କର କୌଣସି କର୍ମଚାରୀର ମନ୍ତ୍ରଣାରେ ବକ ଏହି ବିବାଦ ଘଟାଇଅଛି ।

କାରଣ,—

ବୈଦ୍ୟାନାମାତୁରଃ ଶ୍ରେୟାନ୍ ବ୍ୟସନୀ ଯୋ ନିୟୋଗିନାଂ ।
ବିଦୁଷାଂ ଜୀବନଂ ମୂର୍ଖଃ ସଦ୍ବର୍ଣୋ ନୃପତେର୍ଜନଃ । ୩୭ ।

ରୋଗୀ ଯଦି ମିଳେ ତେବେ ବୈଦ୍ୟ ଲଭେ ଧନ, ପ୍ରଭୁର ବ୍ୟସନେ କର୍ମଚାରୀର ଅର୍ଜନ, । ମୂର୍ଖଲୋକ ପଣ୍ଡିତର ଜୀବିକା କାରଣ, ଅଭିଯୋଗୀ ହେଲେ ପ୍ରଜା ରାଜା ଲଭେ ଧନ । ୩୭ ।

ରାଜାବ୍ରବୀତ୍—ଭବତୁ, କାରଣମେତତ୍ ପଶ୍ଚାନ୍ନିରୂପଣୀୟଂ । ସମ୍ପ୍ରତି ଯତ୍ କର୍ତ୍ତବ୍ୟଂ ତଦ୍ ବ୍ରୂହି । ଚକ୍ରବାକୋ ବ୍ରୂତେ—ଦେବ ପ୍ରଣିଧିସ୍ତାବତ୍ ତତ୍ର ଯାତୁ ତତସ୍ତଦନୁଷ୍ଠାନଂ ବଲାବଲଂ ଚ ଜାନୀମଃ । ତଥାହି ।

ରାଜା କହିଲେ,—ଯାହାହେଉ, ପଶ୍ଚାତ୍ ଏ ବିଷୟର ନିରୂପଣ କରାଯିବ । ବର୍ତ୍ତମାନ ଯାହା କର୍ତ୍ତବ୍ୟ ତାହା କହ ? ଚକ୍ରବାକ କହିଲା,—ମହାରାଜ ! ଅଗ୍ରେ ସେହି ସ୍ଥାନକୁ ଚର ଗମନ କରୁ, ତାହି ଦ୍ୱାରା ବିପକ୍ଷର କାର୍ଯ୍ୟ ସକଳ ଓ ବଳ ସକଳ ଜଣାଯାଇ ପାରିବ । କାରଣ,—

ଭବେତ୍ସ୍ୱପରରାଷ୍ଟ୍ରାଣାଂ କାର୍ଯ୍ୟାକାର୍ଯ୍ୟାବଲୋକନେ ।
ଚାରଶ୍ଚକ୍ଷୁର୍ମହୀଭର୍ତ୍ତୁର୍ଯସ୍ୟ ନାସ୍ତ୍ୟନ୍ଧ ଏବ ସଃ ।

ନିଜରାଜ୍ୟ ଆଉ ପର ରାଜ୍ୟର ବିଷୟେ, କାର୍ଯ୍ୟାକାର୍ଯ୍ୟ ନିରୂପଣ ଯାହାଠାରୁ ହୁଏ । ଏକମାତ୍ର ସେହି ଚର ରାଜାର ନୟନ, ଯେ ନୟନ ବିନା ଅନ୍ଧ ହୋନ୍ତି ନୃପଗଣ । ୩୮ ।

GPNanda Colln., Digitized by srujanika@gmail.com

ସ ଚ ଦ୍ୱୀପଂ ବିଶ୍ୱାସପାତ୍ରଂ ଗୃହୀତ୍ୱା ଯାତୁ । ତେନାସୌ ସ୍ୱୟଂ ତତ୍ରାବସ୍ଥାୟ ଦ୍ୱୀପସ୍ୟ ତସ୍ୟ ମନ୍ତ୍ରକାର୍ଯ୍ୟଂ ସୁନିଭୃତଂ ନିଶ୍ଚିତ୍ୟ ନିଗଦ୍ୟ ପ୍ରସ୍ଥାପୟତୁ । ତଥାଚୋକ୍ତଂ ।

ସେହି ଗୂଢ଼ ଚର ମଧ୍ୟ ଅମ୍ଭମାନଙ୍କର ଅନ୍ୟ ଏକଜଣ ବିଶ୍ୱସ୍ତ ବ୍ୟକ୍ତିକୁ ସଙ୍ଗେ ନେଇ ଯାଉ । ସେ ସ୍ୱୟଂ ସେଠାରେ ଗୂଢ଼ଭାବରେ ରହି ବିପକ୍ଷର ମନ୍ତ୍ରଣା କାର୍ଯ୍ୟ ଅବଗତ ହୋଇ ତାହା ଏହି ବିଶ୍ୱସ୍ତବ୍ୟକ୍ତି ଦ୍ୱାରା ଏ ସ୍ଥାନକୁ ପ୍ରେରଣ କରିବ । କଥିତ ଅଛି ଯେ,——

ତୀର୍ଥାଶ୍ରମ-ସୁରସ୍ଥାନେ ଶାସ୍ତ୍ର-ବିଜ୍ଞାନ ହେତୁନା ।
ତପସ୍ୱିବ୍ୟଞ୍ଜନୋପେତୈଃ ସ୍ୱଚରୈଃ ସହସଂବଦେତ୍ । ୩୮ ।

ତପସ୍ୱୀବେଶେ ଚର ପ୍ରଚ୍ଛନ୍ନ ହୋଇଣ, ରହିବେ ଅଶ୍ରମ ତୀର୍ଥେ ଦେବାଳୟ ସ୍ଥାନ । ଧର୍ମ ପଚାରିବା ଛଳେ ଯାଇଣ ସେଠାକୁ, ବୁଝିବ କୌଶଳେ ନରପତି ମନ୍ତ୍ରଣାକୁ । ୩୮ ।

ଗୂଢଚରଶ୍ଚ ଯୋ ଜଲେ ସ୍ଥଲେ ଚରତି । ତତୋଽସାବେବ ବକୋ ନିଯୁଜ୍ୟତାଂ । ଏତାଦୃଶ ଏବ କଶ୍ଚିଦ୍ ବକୋ ଦ୍ୱିତୀୟତ୍ୱେନ ପ୍ରୟାତୁ । ତଦ୍ ଗୃହଲୋକାଶ୍ଚ ରାଜଦ୍ୱାରେ ତିଷ୍ଠନ୍ତୁ । କିନ୍ତୁ ଦେବ ଏତଦପି ସୁଗୁପ୍ତମନୁଷ୍ଠାତବ୍ୟଂ । ଯତଃ ।

ଅଉ ଯେଉଁ ବ୍ୟକ୍ତି ଜଳ ଓ ସ୍ଥଳରେ ଗତି ବିଧି କରି ପାରେ ତାହାକୁ ଗୂଢ଼ଚର କରିବା ଉଚିତ । ଅତଏବ ଏହି ବକକୁ ଏ କାର୍ଯ୍ୟରେ ନିଯୁକ୍ତ କରନ୍ତୁ । ଆଉ ଏହିରୂପ ବିଶ୍ୱାସ ପାତ୍ର ଅଉ ଗୋଟିଏ ବକ ଏହା ସଙ୍ଗରେ ଗମନ କରୁ ଏବଂ ସେହି ବକର ଗୃହସ୍ଥ ପରିବାରବର୍ଗଙ୍କୁ ରାଜ ଭବନକୁ ଅଣି ରଖାନ୍ତୁ । କିନ୍ତୁ ମହାରାଜ ! ଏ କାର୍ଯ୍ୟ ଅତି ଗୋପନରେ ଅନୁଷ୍ଠାନ କରିବାକୁ ହେବ । କାରଣ,—

ଷଟ୍କର୍ଣ୍ଣୋ ଭିଦ୍ୟତେ ମନ୍ତ୍ରସ୍ତଥା ପ୍ରାପ୍ତଶ୍ଚ ବାର୍ତ୍ତୟା ।
ଇତ୍ୟାତ୍ମନା ଦ୍ୱିତୀୟେନ ମନ୍ତ୍ରଃ କାର୍ଯ୍ୟୋ ମହୀଭୃତା । ୩୯ ।

ଏକାକୀ ମନ୍ତ୍ରୀର ସଙ୍ଗେ ବିରଳେ ବସିଣ, ମନ୍ତ୍ରଣା କରିବ ନୃସ୍ୱଜ୍ଞା ସତର୍କ ହୋଇଣ । ତୃତୀୟ ବ୍ୟକ୍ତିର କାନେ ଯଦି ତାହା ଯାଏ, ଅଥବା ଯଦ୍ୟପି ଚାରୁ

GPNanda Colln., Digitized by srujanika@gmail.com

ବାର୍ତ୍ତା କେହି ପାଏ। ଯେବେହେଁ ଜାଣିବ ତାହା ପ୍ରକାଶ ହୋଇବ, ପ୍ରକାଶ ହେଲେ ସେ ଅଭି ଫଳ ନ ଫଳିବ । ୩୯ ।

ଅପରଞ୍ଚ । ମନ୍ତ୍ରଭେଦେ ହି ଯେ ଦୋଷା ଭବନ୍ତି ପୃଥିବୀପତେଃ ।
ନ ଶକ୍ୟାସ୍ତେ ସମାଧାତୁମିତି ନୀତିବିଦାଂ ମତଂ । ୪୦ ।

ନୃପତିର ମନ୍ତ୍ରଣା ହେଲେ ପ୍ରକାଶିତ, ତହିଁ ଯେ ସକଳ ଦୋଷ ହୁଏ ସଂଘଟିତ, କେଉଁ ରୂପେ ତାର ଅଛି ନାହିଁ ପ୍ରତୀକାର, ଏ କଥା କହନ୍ତି ସବୁ ନୀତିଶାସ୍ତ୍ରକାର । ୪୦ ।

ରାଜା ବିମୃଷ୍ୟୋବାଚ—ପ୍ରାପ୍ତସ୍ତାବନ୍ମୟୋତ୍ତମଃ ପ୍ରଣିଧିଃ । ମନ୍ତ୍ରୀ ବ୍ରୂତେ—ଦେବ! ବିଜୟୋଽପି ପ୍ରାପ୍ତଃ । ଅତ୍ରାନ୍ତରେ ପ୍ରତୀହାରଃ ପ୍ରବିଶ୍ୟ ପ୍ରଣମ୍ୟୋବାଚ—ଦେବ ଜମ୍ବୁଦ୍ୱୀପାଦାଗତୋ ଦ୍ୱାରି ଶୁକ ସ୍ତିଷ୍ଠତି । ରାଜା ଚକ୍ରବାକମାଲୋକତେ । ଚକ୍ରବାକେଣୋକ୍ତଂ—ଅବାସେ ଗତ୍ୱା ତାବଦ୍ ତିଷ୍ଠତୁ । ପଶ୍ଚାଦାନୀୟ ଦ୍ରଷ୍ଟବ୍ୟଃ । ଯଥାଜ୍ଞାପୟତି ଦେବ ଇତ୍ୟଭିଧାୟ ପ୍ରତୀହାରଃ ଶୁକଂ ଗୃହୀତ୍ୱା ଗତଃ । ରାଜାହ—ବିଗ୍ରହସ୍ତାବଦୁପସ୍ଥିତଃ । ଚକ୍ରବାକୋ ବ୍ରୂତେ—ଦେବ ତଥାପି ସହସା ବିଗ୍ରହୋ ନ ବିଧିଃ । ଯତଃ ।

ରାଜା ଚିନ୍ତା କରି କହିଲେ,—ମୁଁ ଗୋଟିଏ ଅତି ଉତ୍କୃଷ୍ଟ ଗୁପ୍ତଚର ପାଇଅଛି । ମନ୍ତ୍ରୀ କହିଲା,—ମହାରାଜ ! ତେବେ ଅପଣଙ୍କର ଯୁଦ୍ଧରେ ଜୟଲାଭ କରିବା ନିଶ୍ଚିତ । ଏହି ସମୟରେ ପ୍ରତୀହାରୀ ଆସି ପ୍ରଣାମ କରି କହିଲା,—ମହାରାଜ । ଜମ୍ବୁଦ୍ୱୀପରୁ ଶୁକ ଆସି ଦ୍ୱାରରେ ଅପେକ୍ଷା କରି ରହିଅଛି । ଚକ୍ରବାକ କହିଲା,—ବର୍ତ୍ତମାନ ତାହାକୁ ଉପଯୁକ୍ତ ବାସସ୍ଥାନକୁ ନେଇ ଯାଅ, ପଶ୍ଚାତ୍ ତାହାକୁ ସଭାକୁ ଆଣି ଦେଖା କରାଇବ । ଯେ ଆଜ୍ଞା ମହାରାଜ ! ଏହା କହି ପ୍ରତୀହାରୀ ଶୁକକୁ ନେଇ ପ୍ରସ୍ଥାନ କଲା । ରାଜା କହିଲେ,—ଯୁଦ୍ଧ ତେବେ ଅବଶ୍ୟ ଘଟିବ । ଚକ୍ରବାକ କହିଲା,—ମହାରାଜ ! ତଥାପି ସହସା ଯୁଦ୍ଧ କରିବା ବିଧି ନୁହେ । କାରଣ,—

ସ କିଂ ଭୃତ୍ୟଃ ସ କିଂ ମନ୍ତ୍ରୀ ଯ ଆଦାବେବ ଭୂପତିଂ ।
ଯୁଦ୍ଧୋଦ୍ୟୋଗଂ ସ୍ୱଭୂତ୍ୟାଗଂ ନିର୍ଦ୍ଦିଶତ୍ୟବିଚାରିତଂ । ୪୧ ।

ସମର କରିବା ଅଥବା ଛାଡ଼ିବା ସ୍ୱଦେଶ, ଅଗ୍ରରେ ରାଜାକୁ ଯେହୁ ଦିଏ ଉପଦେଶ । ଦ୍ୱାପର ଯେଉଁ ଜନ ନ କରେ ବିଚାର, ସେ କେବେ ମନ୍ତ୍ରିର ଯୋଗ୍ୟ ନ ହୁଏ ରାଜାର । ୪୧ ।

GPNanda Colln., Digitized by srujanika@gmail.com

ଅପରଞ୍ଚ । ବିଜେତୁଂ ପ୍ରଯତେତାରୀନ୍ ନ ଯୁଦ୍ଧେନ କଦାଚନ ।
ଅନିତ୍ୟୋ ବିଜୟୋ ଯସ୍ମାଦ୍ ଦୃଶ୍ୟତେ ଯୁଧ୍ୟମାନୟୋଃ । ୪୧ ।

ଅର୍ଥ ମଧ୍ୟ—କେଉଁପକ୍ଷେ ପରାଜୟ କେଉଁ ପକ୍ଷେ ଜୟ, ସମରେ ଏହାର କିଛି ନାହିଁ ଯେ ନିଶ୍ଚୟ । ଅତଏବ ଯୁଦ୍ଧ ନ କରିବ କଦାଚନ, ଅନ୍ୟ-ରୂପେ ଶତ୍ରୁ ଜୟେ କରିବ ଯତନ । ୪୨ ।

ଅନ୍ୟଚ୍ଚ । ସାମଦାନେନ ଭେଦେନ ସମସ୍ତୈ ରଥବା ପୃଥକ୍ ।
ସାଧିତୁଂ ପ୍ରଯତେତାରୀନ୍ ନ ଯୁଦ୍ଧେନ କଦାଚନ । ୪୩ ।

ଅର୍ଥ ମଧ୍ୟ—ସାମ, ଦାନ, ଭେଦ ଏହି ତିନିଟି ଉପାୟ, ବ୍ୟସ୍ତ ବା ସମସ୍ତ ଭାବେ କରିଣ ସହାୟ । ଶତ୍ରୁ ଜୟେ ନରପତି କରିବ ଯତନ, ସମରେ ପ୍ରବୃତ୍ତ ନ ହୋଇବ କଦାଚନ । ୪୩ ।

ଯତଃ । ସର୍ବ ଏବ ଜନଃ ଶୂରୋ ହ୍ୟନାସାଦିତବିଗ୍ରହଃ ।
ଅଦୃଷ୍ଟ ପରସାମର୍ଥ୍ୟଃ ସଦର୍ପକୋ ଭବେନ୍ନହି । ୪୪ ।

କାରଣ—ଭୀଷଣ ସମର ହୁଏ ନାହିଁ ଯେତେ କ୍ଷଣ, ତେତେକ୍ଷଣ ଶୂର-ପ୍ରାୟ ହୁଏ ସର୍ବଜନ । ନ ଦେଖିଣ ବିପକ୍ଷର ବିକ୍ରମ ସମରେ, ଘରେ ବସି କେବା ବଳ ଦର୍ପହିଁ ନ କରେ । ୪୪ ।

କିଞ୍ଚ । ନ ତଥୋତ୍ଥାପ୍ୟତେ ଗ୍ରାବା ପ୍ରାଣିଭିର୍ଦାରୁଣା ଯଥା ।
ଅଳ୍ପୋପାୟାନ୍ମହାସିଦ୍ଧିରେତନ୍ମନ୍ତ୍ରଫଳଂ ମହତ୍ । ୪୫ ।

ଅର୍ଥମଧ୍ୟ—ଅନେକ ଧରଣ ଯାହା କଷ୍ଟରେ ତୋଳିବ, ସେ ଶିଳା କାଠରେ ଟେକି ସହଜେ ଉଠିବ । ସାମାନ୍ୟ କୌଶଳେ ଯେବେ ବଡ଼କାର୍ଯ୍ୟ ହୁଏ, ମନ୍ତ୍ରଣାର ନିପୁଣତା ତାହାକୁହିଁ କହେ । ୪୬ ।

କିନ୍ତୁ ବିଗ୍ରହମୁପସ୍ଥିତଂ ବିଲୋକ୍ୟ ବ୍ୟବହ୍ରିୟତାଂ । ଯତଃ ।

କିନ୍ତୁ ଯୁଦ୍ଧ ଉପସ୍ଥିତ ହେବ ବର୍ତ୍ତମାନଠାରୁ ତାହାର ଉଦ୍ୟୋଗ କରନ୍ତୁ । କାରଣ,—

ଯଥା କାଳକୃତୋଦ୍ଯୋଗାତ୍ କୃଷିଃ ଫଳବତୀ ଭବେତ୍ ।
ତଦ୍ବନ୍ନୀତିରିୟଂ ଦେବ ଚିରାତ୍ ଫଳତି ନ କ୍ଷଣାତ୍ । ୪୭ ।

କୃଷିକାର୍ଯ୍ୟେ ଏକଦିନେ ଫଳନ୍ତ ନ ମିଳେ, ଫଳ ତହୁଁ ଫଳେ କାଳେ ଉଦ୍ୟୋଗନ୍ତ କଲେ । ସେପରି ଜାଣିବ ରାଜନୀତିର କୌଶଳ, କ୍ଷଣମାତ୍ରେ ନାହିଁ ଫଳ, କାଳେହୁଏ ଫଳ । ୪୭ ।

GPNanda Colln., Digitized by srujanika@gmail.com

ଅପରଞ୍ଚ । ମହତୋ ଦୂରଭୀରୁତ୍ୱମାସନ୍ନେ ଶୂରତାଗୁଣଃ ।
ବିପତ୍ତୌ ହି ମହାନ୍ ଲୋକେ ଧୀରତ୍ୱ ମଧିଗଚ୍ଛତି । ୪୭ ।

ଅନୁବାଦ—ସୁଦୂରେ ବିପଦଶଙ୍କା ଯେତେକ୍ଷଣ ରହେ, ବଡ଼ଲୋକ ତେତେକ୍ଷଣ ତହିଁ ଭୀତ ହୁଏ । ସମ୍ମୁଖେ ବିପଦ ଆସି ହେଲେ ଉପସ୍ଥିତ, ଧୈର୍ଯ୍ୟ ଆଉ ବୀର୍ଯ୍ୟଗୁଣ ଦେଖାଏ ତ୍ୱରିତ । ୪୭ ।

ଅନ୍ୟଚ୍ଚ । ପ୍ରତ୍ୟୂହ ସର୍ବସିଦ୍ଧୀନାଂ ମୂଖ୍ୟଃ ପ୍ରଥମଃ କିଳ ।
ଅତିଶୀତଳମପ୍ୟମ୍ଭଃ କିଂ ଭିନତ୍ତି ନ ଭୂତଳଂ । ୪୮ ।

ଅନ୍ୟତ୍ପ୍ରକାର—ମନର ଉତ୍ତାପ ଅତି ଦୋଷର ବିଷୟ, ସର୍ବସିଦ୍ଧି ନାଶ ହୁଏ ଜାଣିବ ନିଶ୍ଚୟ, କଠୋର ଉତ୍ତାପେ ଭୂମି ହେଲେହିଁ ତାପିତ, ଶୀତଳ ଜଳରେ ତାହା ହୁଏ ବିଦାରିତ । ୪୮ ।

ବିଶେଷତସ୍ତୁ ଦେବ ମହାବଳୋଽସୌ ରାଜା ଚିତ୍ରବର୍ଣ୍ଣଃ ଯତଃ ।
ବିଶେଷତଃ ମହାରାଜ ! ଏହି ରାଜା ଚିତ୍ରବର୍ଣ୍ଣ ଅତି ପ୍ରବଳ ପ୍ରତାପ ।

ଅତଏବ,—
ବଳିନା ସହ ଯୋଦ୍ଧବ୍ୟ ମିତି ନାସ୍ତି ନିଦର୍ଶନଂ ।
ହସ୍ତିନା ସହ ଯୁଦ୍ଧଂ ହି ନରାଣାଂ ମୃତ୍ୟୁମାବହେତ୍ । ୪୯ ।

ଦୁର୍ବଳ ଜନର ଯୁଦ୍ଧ ବଳୀର ସହିତ, ଶାସ୍ତ୍ରର ବିଧାନ ତାହା ନୁହେ କଦାଚିତ । ମନୁଷ୍ୟ ଯଦ୍ୟପି ଯୁଝେ ହସ୍ତୀର ସହିତ, ମନୁଷ୍ୟର ମୃତ୍ୟୁ ତାହା ଜାଣିବ ନିଶ୍ଚିତ । ୪୯ ।

ଅନ୍ୟଚ୍ଚ । ସ ମୂର୍ଖଃ କାଳମପ୍ରାପ୍ୟ ଯୋଽପକର୍ତ୍ତରି ବର୍ତ୍ତତେ ।
କଳିର୍ବଳବତା ସାର୍ଦ୍ଧଂ କୀଟପକ୍ଷୋଦ୍ଗମୋ ଯଥା । ୫୦ ।

ଅନୁବାଦ—ପିମ୍ପୁଡ଼ିର ପକ୍ଷି ଉଠେ ମୃତ୍ୟୁ କାରଣରେ, ପ୍ରବଳର ସହ ଯୁଦ୍ଧ ଜାଣ ସେପରି ରେ । ଅକାଳେ ବିପକ୍ଷ ସେହି କରେ ଆକ୍ରମଣ, ନିର୍ବୋଧ ତାକୁ କହନ୍ତି ସଜ୍ଜନ । ୫୦ ।

କିଞ୍ଚ । କୌର୍ମ୍ମଂ ସଙ୍କୋଚ ମାସ୍ଥାୟ ପ୍ରହାର ମପି ମର୍ଷୟେତ୍ ।
ପ୍ରାପ୍ତକାଳେ ତୁ ନୀତିଜ୍ଞ ଉତ୍ତିଷ୍ଠେତ୍ କ୍ରୂରସର୍ପବତ୍ । ୫୧ ।

ଅନୁବାଦ । ସଙ୍କୋଚ ସ୍ୱୀକାର କରି କୂର୍ମ୍ମର ପ୍ରକାରେ, ଅସମୟେ ବିପକ୍ଷର ପୀଡ଼ା ସହିବାରେ । ସମୟ ପାଇଣ ପରେ ସଙ୍କୋଚ ତ୍ୟଜିଣ, ସର୍ପଣ ସର୍ପର ନ୍ୟାୟ ଉଠିବ ଜଣ୍ଡିଣ । ୫୧ ।

GPNanda Colln., Digitized by srujanika@gmail.com

ଶୃଣୁଦେବ । ମହତ୍ୟଲ୍ପେଽପ୍ୟପାୟଜ୍ଞଃ ସମମେବ ଭବେତ୍ କ୍ଷମଃ ।
ସ ମୁନ୍ମୂଳୟିତୁଂ ବୃକ୍ଷାଂସ୍ତୃଣାନୀବ ନଦୀରୟଃ । ୫୨ ।

ଶ୍ରବଣ କରନ୍ତୁ ମହାରାଜ !—ଯେପରି ନଦୀର ବେଗ ହେଲେହିଁ ସୁବଳ, ତୃଣ ତରୁ ସମସ୍ତଙ୍କୁ ଦିଏ ରସାତଳ । ସେପରି ପ୍ରବଳ ଯେଉଁ ଶତ୍ରୁର ସମ୍ଭବ, ଶ୍ରେଷ୍ଠ ବଡ଼ ଶତ୍ରୁ ସେହି ନାଶେ ସମସ୍ତବ । ୫୨ ।

ଅତୋଦ୍ଭୂତୋଽୟଂ ଶୁକୋଽସ୍ମାଶ୍ୱାସ୍ୟ ତାବଦ୍ଧ୍ରିୟତାଂ ଯାବତ୍ ଦୁର୍ଗଂ ସଜ୍ଜୀକ୍ରିୟତେ । ଯତଃ ।

ଅତଏବ ଯେତେକ୍ଷଣ ଅସ୍ମମାନଙ୍କର ଦୁର୍ଗ ଯୁଦ୍ଧାର୍ଥେ ସଜ୍ଜୀଭୂତ ନ ହୁଏ ତେତେକ୍ଷଣ ପର୍ଯ୍ୟନ୍ତ ଦୂତ ଏହି ଶୁକକୁ ମିଷ୍ଟକଥାଦ୍ୱାରା ଭୁଲାଇ ଏ ସ୍ଥାନରେ ରଖାନ୍ତୁ । କାରଣ,—

ଏକଃ ଶତଂ ଯୋଧୟତି ପ୍ରାକାରସ୍ଥୋ ଧନୁର୍ଦ୍ଧରଃ ।
ଶତଂ ଦଶସହସ୍ରାଣି ତସ୍ମାଦ୍ ଦୁର୍ଗଂ ବିଧୀୟତେ । ୫୩ ।

ଏକମାତ୍ର ଯୋଦ୍ଧା ଯଦି ଦୁର୍ଗମଧ୍ୟେ ରହେ, ଶତ ଶତ ବିପକ୍ଷଙ୍କୁ କରେ ପରାଜୟେ । ଏକଶତ ଯୋଦ୍ଧା ଯଦି ଦୁର୍ଗ ମଧ୍ୟେ ରହେ, ଅୟୁତ ବିପକ୍ଷ ସେହି କରେ ପରାଜୟେ । ଦୁର୍ଗହିଁ ରାଜାର ସର୍ବ ପ୍ରଧାନ ଆଶ୍ରୟ, ଦୁର୍ଗର ଅବସ୍ଥା ଅଗ୍ରେ କରିବ ନିଶ୍ଚୟ । ୫୩ ।

ଅପି । ଅଦୁର୍ଗୋ ବିଷୟଃ କସ୍ୟ ନାରେଃ ପରିଭବାସ୍ପଦଂ ।
ଅଦୁର୍ଗୋଽନାଶ୍ରୟୋ ରାଜା ପୋତଚ୍ୟୁତମନୁଷ୍ୟବତ୍ । ୫୪ ।

ଅନ୍ୟଚ୍ଚ । ନ ଥାଏ ଯେଉଁ ରାଜାର ଦୁର୍ଗର ଆଶ୍ରୟ, ତାକୁ ଅରି କେ ନ କରିପାରେ ପରାଜୟ ?, ସମୁଦ୍ରେ ତରଣୀ ଭ୍ରଷ୍ଟ ମନୁଷ୍ୟ ଯେମନ୍ତ, ଦୁର୍ଗ ଭ୍ରଷ୍ଟେ ନରପତି ହୁଅଇ ତେମନ୍ତ । ୫୪ ।

ଦୁର୍ଗଂ କୁର୍ଯ୍ୟାନ୍ମହାଖାତ-ମୁଚ୍ଚପ୍ରାକାରସଂଯୁତଂ ।
ସ ଯନ୍ତ୍ରଂ ସଜଳଂ ଶୈଳସରିନ୍ମରୁବନାଶ୍ରୟଂ । ୫୫ ।

ଦୁର୍ଗର ଚୌଦିଗେ ରଖ ଦୁର୍ଲଙ୍ଘ୍ୟ ପ୍ରାକାର, ଦୁସ୍ତର ପରିଖା ରଖ ମଣ୍ଡଳ ଆକାର । ଦୁର୍ଗ ମଧ୍ୟେ ଯୁଦ୍ଧଯନ୍ତ୍ର, ଜଳର ଆଧାର, ସଞ୍ଚିତ ରଖିବ ସଦା ବିବିଧ ଆହାର । ଗିରି ନଦୀ ମରୁବନେ ଯାହା ସୁରକ୍ଷିତ, ସେ ଦୁର୍ଗ ଉତ୍ତମ ଅତି ଜାଣିବ ନିଶ୍ଚିତ । ୫୫ ।

GPNanda Colln., Digitized by srujanika@gmail.com

ସ୍ତ୍ରୀର୍ଣ୍ଣିତାଽତିବୈଷମ୍ୟଂ ବହୁଧାନ୍ୟେନ୍ଧସଙ୍ଗ୍ରହଃ ।
ପ୍ରବେଶଶ୍ଚାପସାରଶ୍ଚ ସପ୍ତୈତା ଦୁର୍ଗସମ୍ପଦଃ । ୫୭ ।

ଅତି ସୁବିସ୍ତୃତ ହେବ ଦୁର୍ଗ ଅଧିତନ, ଅଭେଦ୍ୟ କରିଣ ତାକୁ କରିବ ଗଠନ । ଜଳ, ଧାନ୍ୟ, କାଷ୍ଠ, ଅନ୍ନ, ରଖିବ ସଞ୍ଚିତ; ପ୍ରବେଶ ନିର୍ଗମ ପଥ ହେବ ସୁରକ୍ଷିତ । ୫୭ ।

ରାଜାହ—ଦୁର୍ଗାନୁସନ୍ଧାନେ କୋଽତ୍ର ନିଯୁଜ୍ୟତାଂ । ଚକ୍ରବାକୋ ବ୍ରୂତେ ।
ରାଜା କହିଲେ,—ଦୁର୍ଗାନୁସନ୍ଧାନରେ କାହାକୁ ନିଯୁକ୍ତ କରାଯିବ ? ଚକ୍ରବାକ କହିଲା,—

ଯୋ ଯତ୍ର କୁଶଳଃ କାର୍ଯ୍ୟେ ତଂ ତତ୍ର ବିନିଯୋଜୟେତ୍ ।
କାର୍ଯ୍ୟେଷ୍ୱଦୃଷ୍ଟକର୍ମା ଯଃ ଶାସ୍ତ୍ରଜ୍ଞୋଽପି ବିମୁହ୍ୟତି । ୫୭ ।

ଯେଉଁ କାର୍ଯ୍ୟେ ଦକ୍ଷ ହୁଏ ଯେଉଁ ଜନ, କରିବ ତାହାକୁ ସେହି କାର୍ଯ୍ୟେ ନିୟୋଜନ । ଶାସ୍ତ୍ରଜ୍ଞ ହେଲେହେଁ ଲୋକ ହତବୁଦ୍ଧି ହୁଏ, କାର୍ଯ୍ୟ ତାର ଯଦ୍ୟପିଟି ଅଭ୍ୟାସ ନ ଥିବେ । ୫୭ ।

ତଦାହୂୟତାଂ ସାରସଃ । ତଥାଽନୁଷ୍ଠିତେ ସତି ସମାଗତଂ ସାରସମବଲୋକ୍ୟ ରାଜୋବାଚ—ସାରସ ତ୍ୱଂ ସତ୍ୱରଂ ଦୁର୍ଗମନୁସନ୍ଧେହି । ସାରସଃ ପ୍ରଣମ୍ୟୋବାଚ—ଦେବ ଦୁର୍ଗଂ ତାବଦିଦମେବ ଚିରାତ୍ ସୁନିରୂପିତମାସ୍ତେ ମହତ୍ ସରଃ । କିନ୍ତ୍ୱେତନ୍ମଧ୍ୟଦ୍ୱୀପେ ଦ୍ରବ୍ୟବସ୍ତୂନାଂ ସଙ୍ଗ୍ରହଃ କ୍ରିୟତାଂ ।

ଅତଏବ ଏ କାର୍ଯ୍ୟର ନିମିତ୍ତ ସାରସକୁ ଆହ୍ୱାନ କରନ୍ତୁ । ଅନନ୍ତର ରାଜାଙ୍କର ଆହ୍ୱାନରେ ସାରସ ଉପସ୍ଥିତ ହେଲାରୁ ରାଜା ତାହାଙ୍କୁ କହିଲେ,—ସାରସ ! ତୁମ୍ଭେ ଅବିଳମ୍ବେ ଯାଇ ଦୁର୍ଗର ଅନୁସନ୍ଧାନ କର । ସାରସ ପ୍ରଣାମ କରି କହିଲା !—ମହାରାଜ ! ଏହି ସୁବିସ୍ତୀର୍ଣ୍ଣ ସରୋବର ଅମ୍ଭମାନଙ୍କର ଚିରଦିନ ବହୁକାଳର ଦୁର୍ଗ ରହିଅଛି । କିନ୍ତୁ ଏହି ସରୋବର ମଧ୍ୟସ୍ଥିତ ଦ୍ୱୀପ ମଧ୍ୟରେ ଖାଦ୍ୟଦ୍ରବ୍ୟ ସକଳ ସଂଗ୍ରହ କରି ରଖିବାକୁ ହେବ । କାରଣ,—

ଧାନ୍ୟାନାଂ ସଙ୍ଗ୍ରହୋ ରାଜନ୍ନୁତ୍ତମଃ ସର୍ବସଙ୍ଗ୍ରହାତ୍ ।
ନିକ୍ଷିପ୍ତଂ ହି ମୁଖେ ରତ୍ନଂ ନ କୁର୍ଯ୍ୟାତ୍ ପ୍ରାଣଧାରଣଂ । ୫୮ ।

GPNanda Colln., Digitized by srujanika@gmail.com

ଧାନ୍ୟର ସଂଗ୍ରହ ଅଗ୍ରେ କରିବ ଯତନେ, ଧାନ୍ୟଠାରୁ ଶ୍ରେଷ୍ଠ ଅନ୍ୟ ନାହିଁଟି ଭୁବନେ । ମଣିରତ୍ନ ମୁଖେ ଦେଲେ କ୍ଷୁଧା ନ ଯାଏ, ଧାନ୍ୟ ଯେବେ ଥାଏ ତେବେ ସବୁ ପ୍ରାଣ ଥାଏ । ୫୮ ।

କିଞ୍ଚ । ଖ୍ୟାତଃ ସର୍ବରସାନାଂ ହି ଲବଣୋ ରସ ଉତ୍ତମଃ ।
ଗୃହୀତଂ ଚ ବିନା ତେନ ବ୍ୟଞ୍ଜନଂ ଗୋମୟାୟତେ । ୫୯ ।

ଅନ୍ୟଚ୍ଚ । ଯତନେ ଲବଣ ଆଣି କରିବ ସଞ୍ଚୟ, ସକଳ ରସର ଶ୍ରେଷ୍ଠ ଲବଣ ନିଶ୍ଚୟ । ଯେତେକ ମସଲା ତୁମ୍ଭେ କର ଦେ ପ୍ରଦାନ, ବ୍ୟଞ୍ଜନ ଲବଣ ବିନା ଗୋମୟ ସମାନ । ୫୯ ।

ରାଜାହ—ସତ୍ୱରଂ ଗତ୍ୱା ସର୍ବମନୁଷ୍ଠୀୟତାଂ । ପୁନଃ ପ୍ରବିଶ୍ୟ ପ୍ରତୀହାରୋ ବ୍ରୂତେ । ଦେବ ସିଂହଳଦ୍ୱୀପାଦାଗତୋ ମେଘବର୍ଣ୍ଣୋନାମ ବାୟସଃ ସପରିବାରୋ ଦ୍ୱାରି ବର୍ତ୍ତତେ । ସ ଚ ଦେବପାଦାନ୍ ଦ୍ରଷ୍ଟୁମିଚ୍ଛତି ।

ରାଜାହ—କାକଃ ପ୍ରାଜ୍ଞ ବହୁଦ୍ରଷ୍ଟା ଚ । ତଦ୍ଭବତି ସଂଗ୍ରାହ୍ୟଃ ।

ଚକ୍ରବାକୋବ୍ରୂତେ—ଦେବ ଅସ୍ତ୍ୟେବଂ । କିନ୍ତୁ ସ୍ଥଳଚରଃ କାକଃ ସ୍ଥଳଚରଃ । ତେନାସ୍ମଦ୍ୱିପକ୍ଷେ ନିଯୁକ୍ତଃ କଥଂ ସଂଗୃହ୍ୟତେ । ତଥା ଚୋକ୍ତଂ ।

ରାଜା କହିଲେ,—ତେବେ ତୁମ୍ଭେ ଶୀଘ୍ର ଯାଇ ସମସ୍ତ ଆୟୋଜନ କରି ରଖ । ପ୍ରତୀହାର ପୁନର୍ବାର ଆସି କହିଲା । ମହାରାଜ ! ମେଘବର୍ଣ୍ଣ ନାମା ଏକ ବାୟସ ସିଂହଳଦ୍ୱୀପରୁ ସପରିବାରେ ଆସି ଦ୍ୱାରରେ ଅପେକ୍ଷା କରିଅଛି । ସେ ମହାରାଜାଙ୍କ ସହିତ ସାକ୍ଷାତ କରିବାକୁ ଇଚ୍ଛା କରେ । ରାଜା କହିଲେ,—କାକଜାତି ଅତି ବିଜ୍ଞ ଓ ବହୁଦର୍ଶୀ, ଅତଏବ ତାହାକୁ ସାହାଯ୍ୟ କରିବା କର୍ତ୍ତବ୍ୟ । ଚକ୍ରବାକ କହିଲା,—ମହାରାଜ ! ସେକଥା ସତ୍ୟ, କିନ୍ତୁ ଆମ୍ଭେମାନେ ଜଳଚର, କାକ ସ୍ଥଳଚର, ଏ କାରଣରୁ ସେ ସ୍ୱଭାବତଃ ଆମ୍ଭର ଶତ୍ରୁ, ସୁତରାଂ ଆମ୍ଭମାନଙ୍କର ଶତ୍ରୁପକ୍ଷରେ ତାହାର ନିଯୁକ୍ତ ହେବା ସମ୍ଭବ । ଅତଏବ ତାହାକୁ କିପରି ସାହାଯ୍ୟ କରାଯାଏ ? । କଥିତ ଅଛି ଯେ,—

ଆତ୍ମପକ୍ଷଂ ପରିତ୍ୟଜ୍ୟ ପରପକ୍ଷେଷୁ ଯୋ ରତଃ ।
ସ ପରୈର୍ହନ୍ୟତେ ମୂଢୋ ନୀଳବର୍ଣ୍ଣଶୃଗାଳବତ୍ । ୬୦ ।

GPNanda Colln., Digitized by srujanika@gmail.com

ଯେ ମୂଢ଼ ସ୍ୱପକ୍ଷ ଛାଡ଼ ଅନ୍ୟପକ୍ଷ ଗ୍ରହେଁ, ମରେ ସେହୁ ନୀଳବର୍ଣ୍ଣ ଶୃଗାଳର ପ୍ରାୟେ । ୭୦ ।

ରାଜୋବାଚ,—କଥମେତତ୍ । ମନ୍ତ୍ରୀ କଥୟତି । ଶୃଗାଳଃ କଶ୍ଚିତ୍ ସ୍ୱେଚ୍ଛୟା ନଗରୋପାନ୍ତେ ଭ୍ରାମ୍ୟନ୍ ନୀଳୀଭାଣ୍ଡେ ନିପତିତଃ । ପଶ୍ଚାଦୁତ୍ଥାତୁମସମର୍ଥଃ ପ୍ରାତରାତ୍ମାନଂ ମୃତବତ୍ ସନ୍ଦର୍ଶ୍ୟ ସ୍ଥିତଃ । ଅଥ ନୀଳୀଭାଣ୍ଡସ୍ୱାମିନା ମୃତ ଇତି ଜ୍ଞାତ୍ୱା ତସ୍ମାତ୍ ସମୁତ୍ଥାପ୍ୟ ଦୂରେ ନୀତ୍ୱାଽସୌ ପରିତ୍ୟକ୍ତଃ । ତତୋଽସୌ ବନଂ ଗତ୍ୱାତ୍ମାନଂ ନୀଳବର୍ଣ୍ଣମବଲୋକ୍ୟାଽଚିନ୍ତୟତ୍— ଅହମିଦାନୀମୁତ୍ତମବର୍ଣ୍ଣଃ । ତଦାତ୍ମନଃ କିମୁତ୍କର୍ଷଂ ନ ସାଧୟାମି ? ଇତ୍ୟାଲୋଚ୍ୟ ଶୃଗାଳାନାହୂୟ ତେନୋକ୍ତଂ—ଅହଂ ଭଗବତ୍ୟା ବନଦେବତୟା ସ୍ୱହସ୍ତେନାଽରଣ୍ୟରାଜ୍ୟେ ସର୍ବୌଷଧିରସେନାଽଭିଷିକ୍ତଃ । ପଶ୍ୟନ୍ତୁ ମମ ବର୍ଣ୍ଣଂ । ତଦଦ୍ୟାରଭ୍ୟାଽସ୍ମିନ୍ନରଣ୍ୟେଽସ୍ମଦାଜ୍ଞୟା ବ୍ୟବହାରଃ କାର୍ଯ୍ୟଃ । ଶୃଗାଳାଶ୍ଚ ତଂ ବିଶିଷ୍ଟବର୍ଣ୍ଣମବଲୋକ୍ୟ ସାଷ୍ଟାଙ୍ଗପାତଂ ପ୍ରଣମ୍ୟୋଚୁଃ— ଯଥା ଜ୍ଞାପୟତି ଦେବଃ । ଇତ୍ୟନେନ କ୍ରମେଣ ସର୍ବେଷ୍ୱରଣ୍ୟବାସିଷୁ ତସ୍ୟାଧିପତ୍ୟଂ ବଭୂବ । ତତସ୍ତେନ ସ୍ୱଜ୍ଞାତିଭିରାବୃତେନାଧିକ୍ୟଂ ସାଧିତଂ । ତତସ୍ତେନ ସିଂହବ୍ୟାଘ୍ରାଦୀନୁତ୍ତମପରିଜନାନ୍ ପ୍ରାପ୍ୟ ସଦସି ଶୃଗାଳାନବଲୋକ୍ୟ ଲଜ୍ଜମାନେନାଽବଜ୍ଞୟା ସ୍ୱଜ୍ଞାତୟଃ ସର୍ବେ ଦୂରୀକୃତାଃ । ତତୋ ବିଷଣ୍ଣାନ୍ ଶୃଗାଳାନବଲୋକ୍ୟ କେନଚିଦ୍ ବୃଦ୍ଧଶୃଗାଳେନୈତତ୍ ପ୍ରତିଜ୍ଞାତଂ—ମା ବିଷୀଦତ । ଯଦନେନାଽନୀତିଜ୍ଞେନ ବୟଂ ମର୍ମ୍ମଜ୍ଞାଃ ପରିଭୂତାଃ ତଦ୍ ଯଥାଽୟଂ ନଶ୍ୟତି ତଥା ବିଧେୟଂ । ଯତୋଽମୀ ବ୍ୟାଘ୍ରାଦୟୋ ବର୍ଣ୍ଣମାତ୍ରବିପ୍ରଲବ୍ଧାଃ ଶୃଗାଳମଜ୍ଞାତ୍ୱା ରାଜାନମିମଂ ମନ୍ୟନ୍ତେ ତଦ୍ ଯଥାଽୟଂ ପରିଚୀୟତେ ତଥା କୁରୁତ । ତତ୍ରୈବ ମନୁଷ୍ଠେୟଂ ଯଥା ବଦାମି । ସର୍ବେ ସନ୍ଧ୍ୟାସମୟେ ତତ୍ ସନ୍ନିଧାନେ ମହାରାବମେକଦା କରିଷ୍ୟଥ । ତତସ୍ତଂ ଶବ୍ଦମାକର୍ଣ୍ଣ୍ୟ ଜାତିସ୍ୱଭାବାତ୍ ତେନାଽପି ଶବ୍ଦଃ କର୍ତ୍ତବ୍ୟଃ । ଯତଃ ।

ରାଜା କହିଲେ,—ସେ କିପ୍ରକାର ? ମନ୍ତ୍ରୀ କହିଲେ । ଏକ ଶୃଗାଳ ସ୍ୱଇଚ୍ଛାକ୍ରମେ ନଗରପ୍ରାନ୍ତରେ ଭ୍ରମଣ କରୁ କରୁ ଏକ ନୀଳକୁଣ୍ଡରେ ପତିତ ହେଲା । ସେ ତହିଁରୁ ଉଠି ନ ପାରି ପ୍ରାତଃକାଳରେ ଠିକ ଯେପରି ମରିଅଛି ସେହିପରି ପଡ଼ି ରହିଲା । ଅନନ୍ତର ସେହି ନୀଳକୁଣ୍ଡର

GPNanda Colln., Digitized by srujanika@gmail.com

ସ୍ୱାମୀ ତାକୁ ମୃତ ସ୍ଥିର କରି କୁଣ୍ଡରୁ ତାହାକୁ ବାହାର କରି ସୁଦୂରରେ ପକାଇଦେଇ ଆସିଲା । ଶୃଗାଳ ମଧ୍ୟ ସେତେବେଳେ ବନମଧ୍ୟରେ ପ୍ରବେଶ କରି ଆପଣାକୁ ନୀଳବର୍ଣ୍ଣ ଦେଖି ଭାବିଲା—ମୋହର ବର୍ଣ୍ଣ ବର୍ତ୍ତମାନ ଅତି ଅପରୂପ ହୋଇଅଛି । ଅତଏବ ଏହିପରି ଚମତ୍କାରବର୍ଣ୍ଣପାଇଁ କାହିଁକି ନିଜର ଉନ୍ନତି ସାଧନ ନ କରିବି । ସେ ଏହିପରି ଭାବି ସମସ୍ତ ଶୃଗାଳଙ୍କୁ ଡାକି କହିଲା,—ଭଗବତୀ ବନଦେବତା ଆସି ସ୍ୱହସ୍ତରେ ମୋହର ମୁଣ୍ଡରେ ସମସ୍ତ ଔଷଧର ରସ ସେଚନ ପୂର୍ବକ ମୋତେ ଅରଣ୍ୟ ରାଜ୍ୟରେ ଅଭିଷିକ୍ତ କରିଅଛନ୍ତି ମୋହର ଆଶ୍ଚର୍ଯ୍ୟବର୍ଣ୍ଣ ଦେଖ ! । ଅତଏବ ଆଜିଠାରୁ ମୋହର ଆଜ୍ଞା-ନୁସାରେ ସମସ୍ତ ବନ୍ୟର କାର୍ଯ୍ୟ ଚଳିବ । ଶୃଗାଳମାନେ ମଧ୍ୟ ତାହାର ସେହି ଅପୂର୍ବବର୍ଣ୍ଣ ଦେଖି ତାହାକୁ ସାଷ୍ଟାଙ୍ଗ ପ୍ରଣାମ କରି କହିଲେ,—ମହା-ରାଜାଙ୍କର ଯେ ଆଜ୍ଞା । ଏହିପରି କ୍ରମେ ସମସ୍ତ ଅରଣ୍ୟବାସୀଙ୍କ ଉପରେ ତାହାର ଆଧିପତ୍ୟ ସ୍ଥାପନ କଲା । ଅନନ୍ତର ସେ ନିଜଜ୍ଞାତିବର୍ଗ ପରିବୃତ ହୋଇ ରହିଲା । କିଛିଦିନ ପରେ ସିଂହ ବ୍ୟାଘ୍ର ପ୍ରଭୃତି ଉଚ୍ଚଶ୍ରେଣୀସ୍ଥ ପଶୁମାନେ ତାହାର ପରିଷଦ ହେବାରୁ ସେ ଶୃଗାଳଙ୍କ ସହବାସରେ ରହିବା ଲଜ୍ଜା ଭାବିକରି ସମସ୍ତ ଜ୍ଞାତିଗଣଙ୍କୁ ସଭାରୁ ଦୂରୀଭୂତ କଲା । ଏଥିରେ ଶୃଗାଳମାନେ ଦୁଃଖିତ ହେବାରୁ ଏକ ବୃଦ୍ଧ ଶୃଗାଳ ପ୍ରତିଜ୍ଞାକରି କହିଲା,—ତୁମ୍ଭେମାନେ ଦୁଃଖିତ ହୁଅନାହିଁ, ଆମ୍ଭେମାନେ ଏହାର ଜ୍ଞାତି, ଏହାର ମର୍ମକଥା ଜାଣୁ, ଏହି ନୀତିଜ୍ଞାନଶୂନ୍ୟ ଶୃଗାଳ ଯେତେବେଳେ ଆମ୍ଭମାନଙ୍କୁ ଅପମାନ ଦେଲା ସେତେବେଳେ ଯହିଁରେ ଏହାର ବିନାଶ ହୁଏ ତାହା ଅବଶ୍ୟ କରିବୁଁ । ଏ ସ୍ଥାନରେ ଏ ସକଳ ବ୍ୟାଘ୍ରାଦି ପଶୁମାନେ କେବଳ ଏହାର ପ୍ରତାରିତ ବର୍ଣ୍ଣକୁ ଜାଣି ନ ପାରି ରାଜା ବୋଲି ମନେକରିଅଛନ୍ତି । ଏହାକୁ ଶୃଗାଳ ବୋଲି ଜାଣି ପାରୁନାହାନ୍ତି । ଅତଏବ ଏହାର ପ୍ରକୃତ ପରିଚୟ ଯହିଁରେ ଜଣାପଡ଼େ ତାହା କରିବାକୁ ହେବ । ଏହିବିଷୟରେ ମୁଁ ଯାହା କହେ କର । ସନ୍ଧ୍ୟା-ବେଳେ ଏହା ପାଖକୁ ଯାଇ ତୁମ୍ଭେମାନେ ନିଜ ଡାକଦିଅ । ତୁମ୍ଭମାନଙ୍କର ଡାକ ଶୁଣି ଏହି ଶୃଗାଳ ଏପରି ଜାତିସ୍ୱ ସ୍ୱଭାବ ଅନୁସାରେ ଡାକିବ । କାରଣ,—

ଯଃ ସ୍ୱଭାବୋ ହି ଯ ଯସ୍ୟ ସ୍ୟାତ୍ ତସ୍ୟାସୌ ଦୁରତିକ୍ରମଃ ।
ଶ୍ୱା ଯଦି କ୍ରିୟତେ ରାଜା ସ କିଂ ନାଶ୍ନାତ୍ୟୁପାନହଂ । ୨୯ ।

GPNanda Colln., Digitized by srujanika@gmail.com

ନୀଚ ଯଦି ଉଚ୍ଚ ପଦେ ଆରୋହଣ କରେ, ତଥାପି ନିଜ ସ୍ୱଭାବ ଛାଡ଼ି ସେ ନ ପାରେ । କୁକ୍କୁର ଯଦ୍ୟପି ପାଏ ରାଜ ସିଂହାସନ, ଚର୍ମର ପାଦୁକା ତେବେ କରଇ ଲେହନ । ୭୧ ।

ତତଃ ଶବ୍ଦାଦଭିଜ୍ଞାୟ ବ୍ୟାଘ୍ରେଣ ହନ୍ତବ୍ୟଃ । ତଥାନୁଷ୍ଠିତେ ସତି ତଦ୍‌ବୃତ୍ତଂ । ତଥାଚୋକ୍ତଂ ।

ଅନନ୍ତର ଡାକ ଶୁଣି ଏହାକୁ ଚିହ୍ନିପାରି ବ୍ୟାଘ୍ର ଏହାର ପ୍ରାଣସଂହାର କରିବ । ଅନନ୍ତର ଶୃଗାଳମାନେ ଏହି ପରାମର୍ଶାନୁସାରେ କାର୍ଯ୍ୟ କଲାରୁ ଠିକ ତାହା ଘଟିଲା । କଥିତ ଅଛି ଯେ,—

ଛିଦ୍ରଂ ମର୍ମ ଚ ବୀର୍ଯ୍ୟଂ ଚ ସର୍ବଂ ବେତ୍ତି ନିଜୋ ରିପୁଃ ।
ଦହତ୍ୟନ୍ତର୍ଗତ ଶ୍ଚୈବ ଶୁଷ୍କବୃକ୍ଷ ମିବାନଳଃ । ୭୨ ।

ମର୍ମକଥା ବଳାବଳ ଛିଦ୍ରର ଦୂଷଣ, ଏ ସବୁ ସନ୍ଧାନ ଜାଣେ ଆପଣାର ଜନ । ବନର ଅଗ୍ନିରେ ବନ ପୋଡ଼ଇ ଯେପରି, ଆତ୍ମୀୟ ହେଲେହେଁ ଶତ୍ରୁ ନଷ୍ଟାଏ ସେପରି । ୭୩ ।

ଅତୋଽହଂ ବ୍ରବୀମି—"ଆତ୍ମ ପକ୍ଷଂ ପରିତ୍ୟଜ୍ୟ"—ଇତ୍ୟାଦି । ରାଜାହ—ଯଦ୍ୟପ୍ୟେବଂ ତଥାପି ଦୃଶ୍ୟତାଂ ତାବଦୟଂ ଦୂରାଦାଗତଃ । ତତ୍ ସଂଗ୍ରହେ ବିଚାରଃ କର୍ତ୍ତବ୍ୟଃ । ଚକ୍ରବାକୋ ବ୍ରୂତେ—ଦେବ ! ପ୍ରଣିଧିସ୍ତାବତ୍ ପ୍ରହିତୋ ଦୁର୍ଗଂ ଚ ସଜ୍ଜୀକୃତଂ । ଅତଃ ଶୁକୋଽପ୍ୟାନୀୟ ପ୍ରସ୍ଥାପ୍ୟତାଂ । କିନ୍ତୁ

ଏଥି ନିମନ୍ତେ କହିଥିଲି ଯେ;—"ଯେ ମୂଢ଼ ସ୍ୱପକ୍ଷ ଛାଡ଼ି ଶତ୍ରୁ ଇଚ୍ଛେ"—ଇତ୍ୟାଦି । ରାଜା କହିଲେ,—ଯଦ୍ୟପି ଏ କଥା ସତ୍ୟ ଅଟେ, ତଥାପି ଏହାର ସହିତ ଅନ୍ତତଃ ସାକ୍ଷାତ କରିବା ଉଚିତ, କାହିଁକିନା ବହୁ ଦୂରରୁ ଆସିଅଛି । ଏହାକୁ ସ୍ୱପକ୍ଷରେ ନିଯୁକ୍ତ କରିବା ବିଷୟ ପଶ୍ଚାତ୍ ବିଚାର କରି ଦେଖାଯିବ । ଚକ୍ରବାକ କହିଲା,—ମହାରାଜ ! ଗୁପ୍ତଚର ପ୍ରେରିତ ହୋଇଅଛି ଏବଂ ଦୁର୍ଗ ମଧ୍ୟ ସଜ୍ଜୀକୃତ ହୋଇଅଛି । ଅତଏବ ବର୍ତ୍ତମାନ ଶୁକ ସହିତ ଦେଖା କରି ତାହାକୁ ବିଦାୟ ଦିଅନ୍ତୁ । କିନ୍ତୁ

GPNanda Colln., Digitized by srujanika@gmail.com

ନନ୍ଦଂ ଜଘାନ ଚାଣକ୍ୟସ୍ତୀକ୍ଷ୍ଣଦୂତ ପ୍ରୟୋଗତଃ ।
ତଦ୍ଦୂରାନ୍ତରିତଂ ଦୂତଂ ପଶ୍ୟେଦ୍ ଧୀର ସମନ୍ୱିତଃ । ୭୩ ।

କପଟେ ଦାରୁଣ ଦୂତ କରଣ ପ୍ରେରଣ; ଚାଣକ୍ୟ ନନ୍ଦର ପ୍ରାଣ କଲଟି ହରଣ । ଅତଏବ ସଙ୍ଗେ ନେଇ ନିଜ ରକ୍ଷୀଗଣ, ଦୂରେ ଥାଇ ଦୂତେ ରାଜା ଦେବ ଦରଶନ । ୭୩ ।

ତତଃ ସଭାଂ କୃତ୍ୱାହୂତଃ କାକୋଽପି । ଶୁକଃ କିଞ୍ଚିଦୁନ୍ନତଶିରା ଦତ୍ତାସନେ ସମୁପବିଶ୍ୟ ବ୍ରୂତେ—ଭୋ ହିରଣ୍ୟଗର୍ଭ ! ତ୍ୱାଂ ରାଜାଧିରାଜ ଶ୍ରୀମଚ୍ଚିତ୍ରବର୍ଣ୍ଣଃ ସମାଜ୍ଞାପୟତି । ଯଦି ଜୀବିତେନ ଶ୍ରିୟା ବା ପ୍ରୟୋଜନମସ୍ତି ତଦା ସତ୍ୱରମାଗତ୍ୟାସ୍ମଚ୍ଚରଣୌ ପ୍ରଣମ । ନୋଚେଦବସ୍ଥାତୁଂ ସ୍ଥାନାନ୍ତରଂ ପରିଚିନ୍ତୟ । ଏତଚ୍ଛ୍ରୁତ୍ୱା ରାଜା ସକୋପମାହ—ଆଃ ସଭାୟାମସ୍ମାକଂ ନ କୋଽପି ବିଦ୍ୟତେ ଯ ଏନଂ ଗଳହସ୍ତୟତି । ତତଃ ଉତ୍ଥାୟ ମେଘବର୍ଣ୍ଣୋ ବ୍ରୂତେ—ଦେବ ! ସମାଜ୍ଞାପୟ ହନ୍ମି ଚୈନଂ ଦୁଷ୍ଟଶୁକଂ । ମନ୍ତ୍ରୀ ବ୍ରୂତେ—ଭଦ୍ରଂ ନୈବଂ ଶୃଣୁ ତାବତ୍—

ଅନନ୍ତର ରାଜା ସଭା କରି ଶୁକକୁ ସେଠାକୁ ଆନୟନ କଲେ, ଏବଂ କାକକୁ ସେଠାକୁ ଆହ୍ୱାନ କଲେ । ଶୁକ ମସ୍ତକ କିଞ୍ଚିତ୍ ଉନ୍ନତ କରି ନିର୍ଦ୍ଦିଷ୍ଟ ଆସନରେ ବସି କହିଲା,—ହେ ହିରଣ୍ୟଗର୍ଭ ! ଶ୍ରୀଲ ଶ୍ରୀଯୁକ୍ତ ରାଜାଧିରାଜ ଚିତ୍ରବର୍ଣ୍ଣ ତୁମ୍ଭଙ୍କୁ ଏହି ଆଜ୍ଞା କରିଅଛନ୍ତି,—ଯଦି ତୁମ୍ଭର ରାଜ୍ୟ ଓ ପ୍ରାଣ ରକ୍ଷା କରିବାର ବାସନା ଥାଏ, ତେବେ ଶୀଘ୍ର ଆସି ଆମ୍ଭ ଚରଣରେ ପ୍ରଣତ ହୁଅ । ନହେବା, ତୁମ୍ଭେ ରାଜ୍ୟ ଛାଡ଼ି ସ୍ଥାନାନ୍ତରକୁ ପଳାଇବା ପାଇଁ ଚେଷ୍ଟା କର । ରାଜା ଏହି କଥା ଶୁଣି କ୍ରୋଧ ହୋଇ କହିଲେ,—ଆଃ ! ଆମ୍ଭର ଏ ସଭାରେ କି କେହି ନାହାନ୍ତି ଯେ ଏ ଦୂତକୁ ଗଳାଧକ୍କା ଦେଇ ଦୂର କରିବ । ତାହା ଶୁଣି ମେଘବର୍ଣ୍ଣ ନାମକ କେହି କାକ ଉଠି କହିଲା,—ମହାରାଜ ! ଏକଥର ଆଜ୍ଞା କରନ୍ତୁ, ଆମ୍ଭେ ଏହି ଦୁଷ୍ଟ ଶୁକଦୂତର ପ୍ରାଣ ସଂହାର କରୁଁ । ମନ୍ତ୍ରୀ କହିଲେ,—ମହାଶୟ ! ଏପରି କଥା ଆଉ କହିବେ ନାହିଁ । ଶୁଣନ୍ତୁ—

ନ ସା ସଭା ଯତ୍ର ନ ସନ୍ତି ବୃଦ୍ଧା ବୃଦ୍ଧା ନ ତେ ଯେ ନ ବଦନ୍ତି ଧର୍ମଂ ।
ଧର୍ମଃ ସ ନୋ ଯତ୍ର ନ ସତ୍ୟମସ୍ତି ସତ୍ୟଂ ନ ତଦ୍ ଯଚ୍ଛଳମଭ୍ୟୁପୈତି ॥



GPNanda Colln., Digitized by srujanika@gmail.com

ସଭା ନୁହେ ତାହା, ଯହିଁ ବୃଦ୍ଧହିଁ ନ ରହେ, ବୃଦ୍ଧ ନୁହେ ସେହୁ ଯେବା ଧର୍ମହିଁ ନ କହେ । ଧର୍ମ ନୁହେ ତାହା ଯହିଁ ସତ୍ୟଟି ନ ରହେ, କପଟତା ଯହିଁ ତାହା ସତ୍ୟ କେବେ ନୁହେ । ୬୪ ।

ଯତୋଧର୍ମ୍ମୋହ୍ୟେଷଃ ।

ଦୂତୋ ମ୍ଲେଚ୍ଛୋଽପ୍ୟବଧ୍ୟଃ ସ୍ୟାଦ୍ରାଜା ଦୂତମୁଖୋ ଯତଃ ।
ଉଦ୍ୟତେଷ୍ୱପି ଶସ୍ତ୍ରେଷୁ ଦୂତୋ ବଦତି ନାନ୍ୟଥା । ୬୫ ।

ଏହା ରାଜଧର୍ମ ଯେ,—ଦୂତ ଜାଣ ରାଜାଙ୍କର ମୁଖତୁଲ୍ୟ ହୁଏ, ମ୍ଲେଚ୍ଛ ହୋଇଲେହେଁ ଦୂତ କେବେ ବଧ ନୁହେ । ବଧିବାକୁ ଗଲେ ତାକୁ ଭୟ ନ କରିବ, ନିର୍ଭୟହୃଦୟେ ଦୂତ ସତ୍ୟଟି କହିବ । ୬୫ ।

ଅନ୍ୟଚ—ସ୍ୱାପକର୍ଷଂ ପରୋତ୍କର୍ଷଂ ଦୂତୋକ୍ତୈର୍ମନ୍ୟତେ ତୁ କଃ ।
ସଦୈବାଽବଧ୍ୟଭାବେନ ଦୂତଃ ସର୍ବଂ ହି ଜଳ୍ପତି । ୬୬ ।

ଅନ୍ୟମଧ୍ୟ—ଶତ୍ରୁର ସମ୍ମାନ ଆଉ ନିଜଅପମାନ, ଦୂତର କଥାରେ କଥା କେବା କରେ ଜ୍ଞାନ ? ସଦାହିଁ ଅବଧ୍ୟଭାବେ ଦୂତ କଥା କହେ, ଦୂତର ଉପରେ କ୍ରୋଧ ଉଚିତ ନ ହୁଏ । ୬୬ ।

ତତୋ ରାଜା କାକଶ୍ଚ ପ୍ରକୃତିମାପନ୍ନୌ । ଶୁକୋଽପ୍ୟତ୍ର ଚଳିତଃ । ପଶ୍ଚାଚ୍ଚକ୍ରବାକେଣାନୀୟ ପ୍ରବୋଧ୍ୟ କନକାଳଙ୍କାରାଦିକଂ ଦତ୍ତ୍ୱା ସମ୍ପ୍ରେଷିତଃ ସ୍ୱଦେଶଂ ଯଯୌ । ତତୋ ବିନ୍ଧ୍ୟାଚଳଂ ଗତ୍ୱା ରାଜାନଂ ଚିତ୍ରବର୍ଣ୍ଣଂ ପ୍ରଣତ-ବାନ୍ । ତମାଲୋକ୍ୟ ଚିତ୍ରବର୍ଣ୍ଣୋ ରାଜାହ—ଶୁକ ! କା ବାର୍ତ୍ତା ? କୀଦୃଶୋଽସୌ ଦେଶଃ ? ଶୁକୋ ବ୍ରୂତେ—ଦେବ ! ସଂକ୍ଷେପାଦିୟଂ ବାର୍ତ୍ତା । ସମ୍ପ୍ରତି ଯୁଦ୍ଧୋଦ୍ୟୋଗଃ କ୍ରିୟତାଂ । ଦେଶଶ୍ଚାଽସୌ କର୍ପୂରଦ୍ୱୀପଃ ସ୍ୱର୍ଗୈକଦେଶଃ, କଥଂ ବର୍ଣ୍ଣୟିତୁଂ ଶକ୍ୟତେ । ତତଃସର୍ବାନ୍ ଶିଷ୍ଟାନାହୂୟ ରାଜା ମନ୍ତ୍ରୟିତୁମୁପବିଷ୍ଟଃ । ଆହ ଚ—ସମ୍ପ୍ରତି ଯତ୍ କର୍ତ୍ତବ୍ୟଂ ତଦ୍ ବ୍ରୂତ । ବିଗ୍ରହଃ ପୁନରବଶ୍ୟଂ କର୍ତ୍ତବ୍ୟଃ । ତଥା ଚୋକ୍ତଂ ।

ମନ୍ତ୍ରୀର ଏହି ସକଳ କଥାରେ ରାଜା ଏବଂ କାକ ପ୍ରକୃତିସ୍ଥ ହେଲେ । ଶୁକ ମଧ୍ୟ ସଭାରୁ ଉଠି ପ୍ରସ୍ଥାନ କରିବାରୁ ଚକ୍ରବାକ ତାହାକୁ ଆଣି ସାନ୍ତ୍ୱନା କଲା, ଏବଂ ସ୍ୱର୍ଣ୍ଣାଳଙ୍କାର ପ୍ରଭୃତି ରାଜପ୍ରସାଦ ପ୍ରଦାନ କରି ତାହାକୁ ତଦୀୟ

GPNanda Colln., Digitized by srujanika@gmail.com

ଏଅନ୍ତେ ସେ ସ୍ୱଦେଶକୁ ପ୍ରସ୍ଥାନ କଲା । ଶୁକ ବିନ୍ଧ୍ୟାଚଳ ଗମନ କରି ନିଜ ପ୍ରଭୁ ମୟୂରରାଜ ଚିତ୍ରବର୍ଣ୍ଣଙ୍କ ଚରଣରେ ପ୍ରଣାମ କଲା । ଶୁକକୁ ପ୍ରତ୍ୟାଗତ ଦେଖି ରାଜା ଚିତ୍ରବର୍ଣ୍ଣ କହିଲେ,—ଶୁକ ! ସମ୍ବାଦ କଣ ? ସେ ଦେଶ କିପରି ? ଶୁକ କହିଲା,—ମହାରାଜ ! ସଂକ୍ଷେପରେ ସମ୍ବାଦ ଏହି ଯେ ଆପଣଙ୍କୁ ଯୁଦ୍ଧସଜ୍ଜା କରିବାକୁ ହେବ । ଆଉମଧ୍ୟ କର୍ପୂର ଦ୍ୱୀପ ଯେପରି ସ୍ୱର୍ଗ ପ୍ରଦେଶ, ତାହାର ଐଶ୍ୱର୍ଯ୍ୟ ମୁଁ ବର୍ଣ୍ଣନା କରିବାକୁ ଅକ୍ଷମ । ଏହା ଶୁଣି ରାଜା ସମସ୍ତ ସୁବିଜ୍ଞ ମନ୍ତ୍ରୀଗଣଙ୍କୁ ଆହ୍ୱାନପୂର୍ବକ ମନ୍ତ୍ରଣା କରିବାକୁ ଲାଗିଲେ । ରାଜା କହିଲେ,—ବର୍ତ୍ତମାନ ଯାହା କର୍ତ୍ତବ୍ୟ ତାହା କହ । କଥିତ ଅଛି ଯେ,—

ଅସନ୍ତୁଷ୍ଟା ଦ୍ୱିଜା ନଷ୍ଟାଃ ସନ୍ତୁଷ୍ଟାଇବ ପାର୍ଥିବାଃ ।
ସଲଜ୍ଜା ଗଣିକା ନଷ୍ଟା ନିର୍ଲଜ୍ଜାଶ୍ଚ କୁଳାଙ୍ଗନାଃ । ୬୭ ।

ଅସନ୍ତୁଷ୍ଟ ବ୍ରାହ୍ମଣର ହୁଅଇ ଦୁର୍ଗତି, ସନ୍ତୁଷ୍ଟ ରାଜାର କେବେ ନ ହୁଏ ଉନ୍ନତି । ଲଜ୍ଜାଶୀଳା ଗଣିକାକୁ ଅନ୍ନଟି ନ ମିଳେ, କୁଳନାରୀ ନଷ୍ଟ-ହୁଏ ଲଜ୍ଜାଟି ନ ଥିଲେ । ୬୭ ।

ଦୂରଦର୍ଶୀ ନାମ ଗୃଧ୍ରୋ ମନ୍ତ୍ରୀ ବ୍ରୂତେ—ଦେବ ! ବ୍ୟସନିତୟା ବିଗ୍ରହୋ ନ ବିଧିଃ । ଯତଃ ।

ଦୂରଦର୍ଶୀନାମକ ଗୃଧ୍ରମନ୍ତ୍ରୀ କହିଲା,— ମହାରାଜ ! ଯୁଦ୍ଧରେ ଅନେକ ବିପଦ ଅଛି, ସହଜେ ଯୁଦ୍ଧକରିବ ବିଧି ନୁହେ । କାରଣ,—

ମିତ୍ରା ମାତ୍ୟସହାୟାଶ୍ଚ ଯଦା ସ୍ୟୁର୍ଦୃଢ଼ଭକ୍ତୟଃ ।
ଶତ୍ରୂଣାଂ ବିପରୀତଞ୍ଚ କର୍ତ୍ତବ୍ୟୋ ବିଗ୍ରହସ୍ତଦା । ୬୮ ।

ଆପଣାର ପାତ୍ର, ମିତ୍ର, ସହାୟଗଣ, ଅତ୍ୟନ୍ତ ଅନୁରକ୍ତ ରହିବେ ଯେସନ । ଶତ୍ରୁ ପକ୍ଷେ ଠିକ ତାର ହେବ ବିପରୀତ, ତେବେ ଶତ୍ରୁସଙ୍ଗେ ଯୁଦ୍ଧ କରିବା ଉଚିତ । ୬୮ ।

ଅନ୍ୟଚ । ଭୂମିର୍ମିତ୍ରଂ ହିରଣ୍ୟଂ ଚ ବିଗ୍ରହସ୍ୟ ଫଳଂ ତ୍ରୟଂ ।
ଯଦୈତନ୍ନିଶ୍ଚିତଂ ଭାବି କର୍ତ୍ତବ୍ୟୋ ବିଗ୍ରହସ୍ତଦା । ୬୯ ।

ଆଉମଧ୍ୟ । ଭୂମି, ମିତ୍ର କିମ୍ବା ଧନ ଏ ତିନି କାରଣେ, ପ୍ରବୃତ୍ତ ହୋଇବ ରାଜା ଶତ୍ରୁସଙ୍ଗେ ରଣେ । ଯେତେବେଳେ ଫଳଲାଭ ବୁଝିବ ନିଶ୍ଚିତ, ତେବେ ସେ ବିଗ୍ରହ ହିଁ ଏ ଶାସ୍ତ୍ର ବିହିତ । ୬୯ ।

GPNanda Colln., Digitized by srujanika@gmail.com

ରାଜାହ—ମମ ବଳାନି ତାବଦ୍‌ବଲୋକୟନ୍ତୁ ମନ୍ତ୍ରି ତଦେତେଷାମୁପଯୋଗୋ ଜ୍ଞାୟତାଂ । ଏବମାହୂୟତାଂ ମୌହୂର୍ତ୍ତିକଃ । ସ ଶୁଭଲଗ୍ନଂ ଯାତ୍ରାର୍ଥଂ ବଦଧାତୁ । ମନ୍ତ୍ରୀ ବଦତି—ଦେବ ! ତଥାପି ସହସା ଯାତ୍ରାକରଣମଯୁକ୍ତଂ । ଯତଃ

ରାଜା କହିଲେ,—ହେ ମନ୍ତ୍ରି ! ତୁମ୍ଭେ ଆମ୍ଭର ସୈନ୍ୟ ସକଳ ପରୀକ୍ଷା କରି ଦେଖ ତେବେ ତାହାଙ୍କର ବଳାବଳ ବୁଝାଯିବ । ଆଉ ଯୁଦ୍ଧ ଯାତ୍ରାର ଶୁଭଲଗ୍ନ ସ୍ଥିର କରିବାପାଇଁ ଦୈବଜ୍ଞଙ୍କୁ ଡକାଅ । ମନ୍ତ୍ରୀ କହିଲେ,— ମହାରାଜ ! ତଥାପି ସହସା ଯୁଦ୍ଧଯାତ୍ରା ଉଚିତ ନୁହେ । କାରଣ,—

ବିଶନ୍ତି ସହସା ମୂଢ଼ା ଯେଽବିଚାର୍ଯ୍ୟ ଦ୍ୱିଷଦ୍ବଳଂ ।
ଖଡ୍ଗଧାରାପରିଷ୍ୱଙ୍ଗଂ ଲଭନ୍ତେ ତେ ସୁନିଶ୍ଚିତଂ । ୭୦ ।

କାରଣ—ଆତ୍ମବଳ ପରବଳ ନ ଭାବିଣ ମନେ, ସହସା ଯେ ମୂଢ଼ଗଣ ପଶନ୍ତି ରଣେ । ନିଶ୍ଚୟ ଜାଣିବ ସେହୁ ମୂଢ଼ର କାରଣ, ଖରଧାର କୃପାଣକୁ କରେ ଆଲିଙ୍ଗନ । ୭୦ ।

ରାଜାହ—ମନ୍ତ୍ରିନ୍ ! ମମୋତ୍ସାହଭଙ୍ଗଃ ସର୍ବଥା ମା କୃଥାଃ । ବିଜିଗୀଷୁର୍ଯଥା ପରଭୂମିମାକ୍ରାମତି ତଥୋପଦିଶ । ଗୃଧ୍ରୋଽବ୍ରବୀତ୍—ଦେବ ! ତତ୍ କଥୟାମି । କିନ୍ତୁ ତଦନୁଷ୍ଠିତମେବ ଫଳପ୍ରଦଂ । ତଥା ଚୋକ୍ତଂ ।

ରାଜା କହିଲେ,—ମନ୍ତ୍ରି ! ଏହି ଯୁଦ୍ଧବିଷୟରେ କଦାଚ ମୋହର ଉତ୍ସାହ ଭଙ୍ଗ କରନାହିଁ । ଜୟକାମୀ ରାଜା ଯେଉଁପରି ଶତ୍ରୁ ରାଜ୍ୟକୁ ଆକ୍ରମଣ କରେ ମୋତେ ତାହାର ଉପଦେଶ ଦିଅ । ଗୃଧ୍ର କହିଲା,—ମହାରାଜ ! କହୁଅଛି ଶୁଣନ୍ତୁ । କିନ୍ତୁ ତଦନୁରୂପ କାର୍ଯ୍ୟାନୁଷ୍ଠାନ ନ କଲେ ସେ ସକଳ ଉପାୟ ଫଳପ୍ରଦ ହୁଏନାହିଁ । କଥିତ ଅଛି ଯେ,—

କିଂ ମନ୍ତ୍ରେଣାନନୁଷ୍ଠାନେନ ଶାସ୍ତ୍ରବତ୍ ପୃଥିବୀପତେଃ ।
ନ ହ୍ୟୌଷଧପରିଜ୍ଞାନାଦ୍ ବ୍ୟାଧେଃ ଶାନ୍ତିଃ କ୍ୱଚିଦ୍ଭବେତ୍ । ୭୧ ।

ଅନୁଷ୍ଠାନବିନା ଫଳ କିବା ମନ୍ତ୍ରଣାରେ ?, ଔଷଧର ନାମ ଶୁଣି କେବେ ରୋଗ ତୁଟିବ ? । ୭୧ ।

GPNanda Colln., Digitized by srujanika@gmail.com

ସ୍ୱଜାଦେଶସ୍ତାନନ୍ତକ୍ଷମଣୀୟ ଇତି ଯଥାଶ୍ରୁତଂ ନିବେଦୟାମି । ଶୃଣୁ ଦେବ ।

ମହାରାଜଙ୍କ ଆଜ୍ଞା ଅଲଙ୍ଘନୀୟ, ଅତଏବ ମୁଁ ଏହି ସକଳ ଉପାୟ ଶାସ୍ତ୍ରାନୁସାରେ କହୁଅଛି । ମହାରାଜ ! ଶ୍ରବଣ କରନ୍ତୁ ।

ନଦ୍ୟଦ୍ରିବନଦୁର୍ଗେଷୁ ଯତ୍ର ଯତ୍ର ଭୟଂ ନୃପ ।
ତତ୍ର ତତ୍ର ଚ ସେନାନୀର୍ଯାୟାଦ୍‌ବ୍ୟୂହୀକୃତୈର୍ବଳୈଃ । ୭୨ ।

ନଦ ନଦୀ ଦୁର୍ଗ କମ୍ପା ପର୍ବତ କାନନ, ଯେଉଁସ୍ଥାନେ ଅଛି ଭୟ ଶଙ୍କାର କାରଣ । ସେହିସ୍ଥାନେ ସେନାପତି କରିବ ଗମନ, ବ୍ୟୂହ ସଜାଇଣ ସଙ୍ଗେ ନେଇ ସୈନ୍ୟଗଣ । ୭୨ ।

ବଳାଧ୍ୟକ୍ଷଃ ପୁରୋଯାୟାତ୍ ପ୍ରବୀରପୁରୁଷାନ୍ୱିତଃ ।
ମଧ୍ୟେ କଳତ୍ରଂ ସ୍ୱାମୀ ଚ କୋଷଃ ଫଲ୍ଗୁ ଚ ଯଦ୍ବଳଂ । ୭୩ ।

ବଳାଧ୍ୟକ୍ଷ ସବୁ ଅଗ୍ରେ କରିବ ଗମନ, ସଙ୍ଗେତେ ଚଳିବେ ତାର ମହାବୀରଗଣ । ରାଜା ଭାର୍ଯ୍ୟା କୋଷ ଅଉ ଦୁର୍ବଳ ଯେ ଜନ, ମଧ୍ୟସ୍ଥଳେ ରଖି ତାଙ୍କୁ କରିବ ପ୍ରୟାଣ । ୭୩ ।

ପାର୍ଶ୍ୱୟୋ ରୁଭୟୋରଶ୍ୱା ଅଶ୍ୱାନାଂ ପାର୍ଶ୍ୱତୋ ରଥାଃ ।
ରଥାନାଂ ପାର୍ଶ୍ୱତୋ ନାଗା ନାଗାନାଂ ଚ ପଦାତୟଃ । ୭୪ ।

ଦୁଇପାର୍ଶ୍ୱେ ଅଶ୍ୱାରୋହୀ କରିବେ ଗମନ, ତାର ପାର୍ଶ୍ୱେ ଗମନ କରିବେ ରଥୀଗଣ; ରହିବେ ରଥୀରପାର୍ଶ୍ୱେ ମାତଙ୍ଗ ସକଳ, ଚଳିବେ ତାର ପାର୍ଶ୍ୱରେ ପଦାତିକ ଦଳ । ୭୪ ।

ପଶ୍ଚାତ୍ ସେନାପତିର୍ଯାୟାତ୍ ଖିନ୍ନାନାଶ୍ୱାସୟଞ୍ଛନୈଃ ।
ମନ୍ତ୍ରିଭିଃ ସୁଭଟୈର୍ଯୁକ୍ତଃ ପ୍ରତିଗୃହ୍ୟ ବଳଂ ନୃପଃ । ୭୫ ।

ଖିନ୍ନ ସୈନ୍ୟଗଣେ ଦେଇ ଆଶ୍ୱାସ ବଚନ, ପଶ୍ଚାତ୍ ସେନାନୀ ଧୀରେ କରିବେ ଗମନ । ଦଳ ବଳ ମନ୍ତ୍ରୀ ଅଉ ମହାବୀରଗଣ, ସଙ୍ଗେ ନେଇ ରାଜା ଶେଷେ କରିବେ ଗମନ । ୭୫ ।

ସମେୟାଦ୍ ବିଷମଂ ନାଗୈର୍ଜଲାଢ୍ୟଂ ସମସ୍ଥଧରଂ ।
ସମମଶ୍ୱୈର୍ଜଳଂ ନୌଭିଃ ସର୍ବତ୍ରୈବ ପଦାତିଭିଃ ।। ୭୬ ।

GPNanda Colln., Digitized by srujanika@gmail.com

ଶୈଳେ ଜଳେ ସମାକୀର୍ଣ୍ଣ ଉଚ୍ଚ ନୀଚ ସ୍ଥାନ, ହସ୍ତୀ ଦ୍ୱାରା ସେ ସ୍ଥାନକୁ କରିବ ଗମନ । ନୌକା ଜଳେ ଚଳାଇବ, ଅଶ୍ୱ ସମତଳେ, ସର୍ବଥିହିଁ ଚଳାଇବ ପଦାତିକ ଦଳେ । ୭ ।

ହସ୍ତିନାଂ ଗମନଂ ପ୍ରୋକ୍ତଂ ପ୍ରଶସ୍ତଂ ଜଳଦାଗମେ ।
ତଦନ୍ୟତ୍ର ତୁରଙ୍ଗାଣାଂ ପତ୍ତୀନାଂ ସର୍ବଦୈବ ହି । ୭୭ ।

ହସ୍ତୀର ପ୍ରଶସ୍ତ ଯାତ୍ରା ବର୍ଷାରମ୍ଭେ ହୁଏ, ବର୍ଷା ଶେଷେ ପୁଣି ଅଶ୍ୱଯାତ୍ରା ଶୁଭହୁଏ । ଯେତେବେଳେ ଯେଉଁ ସ୍ଥାନେ ହେବ ପ୍ରୟୋଜନ, ପଦାତିକ ସର୍ବକାଳେ କରିବେ ଗମନ । ୭୭ ।

ଶୈଳେଷୁ ଦୁର୍ଗମାର୍ଗେଷୁ ବିଧେୟଂ ନୃପ ରକ୍ଷଣଂ ।
ସ୍ୱଯୋଧୈଃ ରକ୍ଷିତସ୍ୟାପି ଶୟନଂ ଯୋଗନିଦ୍ରୟା । ୭୮

ପର୍ବତେ ଦୁର୍ଗମପଥେ ସଙ୍କଟର ସ୍ଥାନେ, ରାଜାଙ୍କୁ କରିବେ ରକ୍ଷା ଅତିସାବଧାନେ । ହେଲେହେଁ ସୁରକ୍ଷିତ ନିଜ ସୈନ୍ୟଗଣେ, କପଟରେ ରାଜା ନିଦ୍ରାଯିବେ ସଚେତନେ । ୭୮ ।

ନାଶୟେତ୍ କର୍ଷୟେତ୍ ଶତ୍ରୂନ୍ ଦୁର୍ଗକଣ୍ଟକମର୍ଦ୍ଦନୈଃ ।
ପରଦେଶପ୍ରବେଶେ ଚ କୁର୍ଯ୍ୟାଦାଟବିକାନ୍ ପୁରଃ । ୭୯ ।

ସମସ୍ତ କଣ୍ଟକ ଦୁର୍ଗ କରି ବିମର୍ଦ୍ଦନ, ଉତ୍ଖାତ କରିବ ରାଜା ଶତ୍ରୁ ସୈନ୍ୟଗଣ । ବୋଟିକ ସୈନ୍ୟଙ୍କେ କରି ଅଗ୍ରସର, ପ୍ରବେଶ କରିବ ରାଜା ରାଜ୍ୟର ଭିତର ।

ଯତ୍ର ରାଜା ତତ୍ର କୋଷୋ ବିନା କୋଷଂ ନ ରାଜତା ।
ସୁଭଟେଭ୍ୟସ୍ତତୋ ଦଦ୍ୟାତ୍ କୋ ହି ଦାତୁର୍ନଯୁଧ୍ୟତେ । ୮୦

ଯହିଁ ରାଜା ତହିଁ ବିନା ରାଜକୋଷ ନହେ, କୋଷ ବିନା ରାଜାରହିଁ ରାଜତ୍ୱ ନ ରହେ । ତୋଷିବ ସୁଯୋଧଗଣେ ସଦା ଅର୍ଥ ଦେଇ, ସକଳେ ଯୁଦ୍ଧ କରନ୍ତି ଅର୍ଥଲୁବ୍ଧ ହୋଇ । ୮୦ ।

ଯତଃ । ନ ନରସ୍ୟ ନରୋ ଦାସଃ ଦାସସ୍ତ୍ୱର୍ଥସ୍ୟ ଭୂପତେ ।
ଗୌରବଂ ଲାଘବଂ ଚାପି ଧନାଧନନିବନ୍ଧନଂ । ୮୧ ।

GPNanda Colln., Digitized by srujanika@gmail.com

କାରଣ । ମନୁଷ୍ୟର ଦାସ କେବେ ମନୁଷ୍ୟ ନ ହୁଏ, ମନୁଷ୍ୟ ଅର୍ଥର ଦାସ ଜାଣିବ ନିଶ୍ଚୟେ । ଏଭବେ ଗୌରବ ଯେତେ ଅର୍ଥର ପ୍ରଭାବେ, ଅଗୌରବ ଯେତେ କଛ ଅର୍ଥର ଅଭାବ । ୮୧ ।

ଅଭେଦେନ ଚ ଯୁଧ୍ୟେୟୁଃ ରକ୍ଷେୟୁଃ ଚ ପରସ୍ପରଂ ।
ଫଲ୍ଗୁ ସୈନ୍ୟଂ ଚ ଯତ୍ କିଞ୍ଚିନ୍ମଧ୍ୟେ ବ୍ୟୂହସ୍ୟ କାରୟେତ୍ ।୮୨।

ଏକପ୍ରାଣ ହୋଇ ସଙ୍ଗେ କରିବ ସମର, ଏକପ୍ରାଣ ହୋଇ ରକ୍ଷା କରିବ ପରସ୍ପର । ଦେଖିବ ଯେ ସବୁ ସୈନ୍ୟ ଅସାର ଦୁର୍ବଳ, ରଖିବ ବ୍ୟୂହର ମଧ୍ୟସ୍ଥଳେ ଏସ ସକଳ । ୮୨ ।

ପଦାତୀଂଶ୍ଚ ମହୀପାଳଃ ପୁରୋଽନୀକସ୍ୟ ଯୋଜୟେତ୍ ।
ଉପରୁଧ୍ୟାରିମାସୀତ ରାଷ୍ଟ୍ରଂ ଚାସ୍ୟୋପପୀଡୟେତ୍ । ୮୩ ।

ନରପତି ଆପଣାର ପଦାତିକଦଳ, ବ୍ୟୂହମୁଖେ ନିଯୋଜିତ କରିବ ସକଳ । ଶତ୍ରୁଦୁର୍ଗ ଅବରୋଧ କରିଣ ରହିବ, ନାନାରୂପେ ଶତ୍ରୁରାଜ୍ୟ ପୀଡ଼ନ କରିବ । ୮୩ ।

ସ୍ୟନ୍ଦନାଶ୍ୱୈଃ ସମେ ଯୁଧ୍ୟେଦନୂପେ ନୌଦ୍ୱିପୈସ୍ତଥା ।
ବୃକ୍ଷଗୁଲ୍ମାବୃତେ ଚାପୈରସିଚର୍ମାୟୁଧୈଃ ସ୍ଥଲେ । ୮୪ ।

ଯୁଝିବ ନୌକାର ସଙ୍ଗେ ଜଳାକୀର୍ଣ୍ଣସ୍ଥଳେ, ଅଶ୍ୱରଥେ ସଂଗ୍ରାମ କରିବ ସମତଳେ । ଧନୁ ଶର, ଅସି ଚର୍ମ କରେଣ ଧାରଣ, ବୃକ୍ଷଗୁଳ୍ମାବୃତସ୍ଥଳେ କରିବଟି ରଣ । ୮୪ ।

ଦୂଷୟେଚ୍ଚାସ୍ୟ ସତତଂ ଯବସାନ୍ନୋଦକେନ୍ଧନଂ ।
ଭିନ୍ଦ୍ୟାଚ୍ଚୈବ ତଡ଼ାଗାନି ପ୍ରାକାରାନ୍ ପରିଖାସ୍ତଥା । ୮୫ ।

ତୃଣ, କାଷ୍ଠ, ଅନ୍ନ, ପାନ ଯା କିଛି ଦେଖିବ, ଶତ୍ରୁର ସେ ସବୁ ଦ୍ରବ୍ୟ ଦୂଷିତ କରିବ । ତଡ଼ାଗାଦି ଜଳାଶୟ ପରିଖା ପ୍ରାକାର, ଭଙ୍ଗି ଚୂର୍ଣ୍ଣ କରିଦେବ ସବୁ ଘରଦ୍ୱାର । ୮୫ ।

ବଲେଷୁ ପ୍ରମୁଖୋ ହସ୍ତୀ ନ ତଥାଽନ୍ୟୋ ମହୀପତେଃ ।
ନିଜୈରବୟବୈରେବ ମାତଙ୍ଗୋଽଷ୍ଟାୟୁଧଃ ସ୍ମୃତଃ । ୮୬ ।

GPNanda Colln., Digitized by srujanika@gmail.com

ରାଜାର ସୈନ୍ୟମଧ୍ୟରେ ହସ୍ତୀହିଁ ପ୍ରଧାନ, ଅଶ୍ୱ, ରଥ ପତ୍ତିବୃନ୍ଦ ହସ୍ତୀର ସମାନ। ଅଠଟି ଅଙ୍ଗ ତାହାର ଅଠ ପ୍ରହରଣ, ଅକାତରେ ଯୁଦ୍ଧେ ତହିଁ ଦୁର୍ଦ୍ଦ୍ଧର୍ଷ କାରଣ। ୮୬।

ବଳମଶ୍ୱଶ୍ଚ ସୈନ୍ୟାନାଂ ପ୍ରାକାରୋ ଜଙ୍ଗମୋ ମତଃ।
ତସ୍ମାଦଶ୍ୱାଧିକୋ ରାଜା ବିଜୟୀ ସ୍ଥଳବିଗ୍ରହେ। ୮୭।

ସୁଦୃଢ଼ପ୍ରାକାର ତୁଲ୍ୟ ଅଶ୍ୱସେନାଗଣ, ସ୍ଥଳପଥେ ସଙ୍କଟରୁ କର ହେ ରକ୍ଷଣ। ପ୍ରବଳ ତୁରଗବଳ ଅଛି ଯେ ରାଜାର, ସ୍ଥଳଯୁଦ୍ଧେ ଅବଶ୍ୟହିଁ ଜୟଲାଭ ତାର। ୮୭।

ଯେ ଥା ସ୍ୱୈ — ନ୍ୟଧମାନା ହ୍ୟାରୂଢ଼ା ଦେବାନାମପି ଦୁର୍ଜ୍ଜୟାଃ।
ଅପି ଦୂରସ୍ଥିତା ଯେଷାଂ ବୈରିଣୋ ହସ୍ତବର୍ତ୍ତିନଃ। ୮୮।

ଯେଉଁମାନେ ଅଶ୍ୱରୋହି ସମର କରନ୍ତି, ଦେବତାମାନେହିଁ ତାଙ୍କୁ ଡ଼ରିମରୁଥାନ୍ତି। ଅତ୍ୟନ୍ତ ଦୂରରେ ଯଦି ବୈରୀହିଁ ରହେ, ସହଜରେ ସେମାନଙ୍କ ହସ୍ତଗତ ହୁଏ। ୮୮।

ପ୍ରଥମଂ ଯୁଦ୍ଧକାରିତ୍ୱଂ ସମସ୍ତବଳପାଳନଂ।
ଦିଙ୍ମାର୍ଗାଣାଂ ବିଶୋଧିତ୍ୱଂ ପତ୍ତିକର୍ମ ପ୍ରଚକ୍ଷତେ। ୮୯।

ଯାହାର ଅଗ୍ରେହିଁ ନିଜସୈନ୍ୟ ସମୁଦାୟ, ଯତନେ ଅବେକ୍ଷଣ କରନ୍ତି ସର୍ବ୍ବ। ପଦାତିକ ସେନାଦଳ କହିଣ ଗମନ, ପଥର କଣ୍ଟକ ଯେତେ କରନ୍ତି ଶୋଧନ। ୮୯।

ସ୍ୱଭାବଶୂରମସ୍ତ୍ରଜ୍ଞ ମବିରକ୍ତଂ ଜିତଶ୍ରମଂ।
ପ୍ରସିଦ୍ଧକ୍ଷତ୍ରିୟପ୍ରାୟଂ ବଳଂ ଶ୍ରେଷ୍ଠତମଂ ବିଦୁଃ। ୯୦।

କଠୋର କଷ୍ଟରେ ଯାହା ଅଟଳ ଅଚଳ, ଶୌର୍ଯ୍ୟଶୀଳ, ଅନୁରକ୍ତ, ଶସ୍ତ୍ରେ ସୁକୁଶଳ। ଅତ ଯତ୍ନେ ବହୁପକ୍ଷ୍ୟ କରିବାର ହେବ, ସର୍ବ୍ବଶ୍ରେଷ୍ଠ ସେନା ଏହି ନୀତ ଶାସ୍ତ୍ରେ କହେ। ୯୦।

ଯଥା ପ୍ରଭୁକୃତାନ୍ମାନାଦ୍ ଯୁଧ୍ୟନ୍ତେ ଭୁବି ମାନବାଃ।
ନ ତଥା ବହୁଭିର୍ଦ୍ଦତ୍ତୈର୍ଦ୍ଦ୍ରବିଣୈରପି ଭୂପତେ। ୯୧।

GPNanda Colln., Digitized by srujanika@gmail.com

ଆପଣା ନୃପତି ଯଦି ବଢ଼ାଇଣ ମାନ, ସକଳ ହୃଦୟେ କରେ ଉତ୍ସାହ ବର୍ଦ୍ଧନ । ତେବେ ତହିଁ ସୈନ୍ୟଗଣ ଯୁଝିବେ ଯେପରି, ବହୁଧନ ଦେଲେ ମଧ ନ ଯୁଝେ ସେପରି ।୯୧।

ବରମଲ୍ପବଲଂ ସାରଂ ନ ବହ୍ୱୀ ମୁଣ୍ଡମଣ୍ଡଳୀ ।
କୁର୍ଯ୍ୟାଦସାରଭଙ୍ଗୋ ହି ସାରଭଙ୍ଗମପି ସ୍ଫୁଟଂ ।୯୨।

ବହୁତ ଅସାର ସୈନ୍ୟ ଥିବା ଭଲ ନୁହେ, ଅଳ୍ପ ସୈନ୍ୟ ସେହୁ ଭଲ ଦକ୍ଷ ଯଦି ହୁଏ । କେହେତୁ ଅସାର ସୈନ୍ୟ ଦେଲେ ରଣେ ଭଙ୍ଗ, ସୁଦକ୍ଷ ସୈନ୍ୟହିଁ ଭଙ୍ଗ ହୁଏ ତାର ସଙ୍ଗ ।୯୨।

ଅପ୍ରସାଦୋଽନଧିଷ୍ଠାନଂ ଦେୟାଂଶହରଣଂ ଚ ଯତ୍ ।
କାଳଯାପୋଽପ୍ରତୀକାରସ୍ତଦ୍ ବୈଗୁଣ୍ୟକାରଣଂ ।୯୩।

ପ୍ରଭୁ ଯଦି ସୈନ୍ୟଙ୍କୁ ନ ଦେରେ ଅବେକ୍ଷଣ, ପ୍ରସନ୍ନତା ଯଦିହିଁ ନ କରେ ଦର୍ଶନ । ସୈନ୍ୟର ଲଭ୍ୟାଂଶ ଯେବ କରଇ ହରଣ, ସମୟେ କର୍ତ୍ତବ୍ୟ ଯଦି ନ କରେ ପାଳନ । ବିପଦେ ସବୁଙ୍କୁ ଯଦି ନ କରେ ରକ୍ଷଣ, ତେବେ ଅନୁରକ୍ତ ନୁହନ୍ତି ସୈନ୍ୟଗଣ ।୯୩।

ଅପୀଡ଼ୟନ୍ ବଳଂ ଶତ୍ରୂନ୍ ଜିଗୀଷୁରଭିଷେଣୟେତ୍ ।
ସୁଖସାଧ୍ୟଂ ଦ୍ୱିଷାଂ ସୈନ୍ୟଂ ଦୀର୍ଘପ୍ରୟାଣପୀଡ଼ିତଂ ।୯୪।

ପଥକଷ୍ଟେ ସୈନ୍ୟ ଯଦି ପୀଡ଼ିତ ହୁଏ, ସହଜେ ବିପକ୍ଷ ତା'ର କରେ ପରାଜୟେ । ଅତଏବ ନିଜ ସୈନ୍ୟ ନ କରି ପୀଡ଼ନ, ଶତ୍ରୁ ସେନା ଜିଗୀଷୁ କରିବେ ଆକ୍ରମଣ ।୯୪।

ଦାୟାଦାଦପରୋ ମନ୍ତ୍ରୀ ନାସ୍ତି ଭେଦକରୋ ଦ୍ୱିଷାଂ ।
ତସ୍ମାଦୁତ୍ଥାପୟେଦ୍ ଯତ୍ନାଦ୍ ଦାୟାଦଂ ତସ୍ୟ ବିଦ୍ୱିଷଃ ।୯୫।

ଦାୟାଦ ଶତ୍ରୁର ଭେଦ ଘଟାଏ ଯେପରି, ଅନ୍ୟ ଜନ ନ ପାରଇ ସେ କାର୍ଯ୍ୟ ସେପରି । ଅତଏବ ବିପକ୍ଷରେ ଯାହାର ଦାୟାଦ, ଘଟିବ ତାହାର ସଙ୍ଗେ ତାହାର ବିବାଦ ।୯୫।

ସନ୍ଧାୟ ଯୁବରାଜେନ ଯଦି ବା ମୁଖ୍ୟମନ୍ତ୍ରିଣା ।
ଅନ୍ତଃପ୍ରକୋପଣଂ କାର୍ଯ୍ୟମଭିଯୋକ୍ତୁଃ ସ୍ଥିରାତ୍ମନଃ ।୬।

GPNanda Colln., Digitized by srujanika@gmail.com

ଯୁବରାଜେ କମ୍ମା ମନ୍ତ୍ରୀବରେ ଭଙ୍ଗାଇଣ, ସ୍ୱପକ୍ଷ ଅତୀବ ଦୃଢ଼ କୌଶଳ କରିଣ, ଏରୂପ ଶତ୍ରୁର ଗୃହେ ଘଟାଇଣ ଭେଦ, ଜଗୀଷୁ ବିପକ୍ଷ ରାଜ୍ୟ କରିବ ଉଚ୍ଛେଦ । ୯୬ ।

ନୀଚମେକଂ ରଣେ କ୍ୱାପି ଭଙ୍ଗଂ ଦତ୍ତ୍ୱାଽଭିଘାତୟେତ୍ ।
ଅଥବା ଗୋଗ୍ରହାକୃଷ୍ଟ୍ୟା ତନ୍ମୁଖ୍ୟାଶ୍ରିତବନ୍ଧନାତ୍ । ୯୭ ।

ଯେ ନୀଚ ସମରେ କରେ ଶଠତା ପ୍ରକାଶ, ରଣେ ଭଙ୍ଗ ଦେଇ ତାକୁ କରିବଟି ନାଶ । ତାହାର ଗୋଧନ ଆଦି କରିବ ହରଣ, ତାହାର ସ୍ୱପକ୍ଷଗଣେ କରିବ ବନ୍ଧନ । ୯୭ ।

ସ୍ୱରାଷ୍ଟ୍ରଂ ବାସୟେଦ୍ରାଜା ପରଦେଶାପହାରଣାତ୍ ।
ଅଥବା ଦାନମାନାଭ୍ୟାଂ ବାସିତଂ ଧନଦଂ ହି ତତ୍ । ୯୮ ।

ଦାନେ ମାନେ ଛଳେ ବଳେ କରି ଆନୟନ, ସ୍ୱଦେଶରେ ଶତ୍ରୁ ପ୍ରଜା କରିବ ସ୍ଥାପନ । ସ୍ୱରାଜ୍ୟ ପ୍ରଜାର ବାସ ଯେତେଟି ହୋଇବ, ରାଜାଙ୍କର ରାଜ୍ୟ ଅର୍ଥ ତେତେଟି ବଢ଼ିବ । ୯୮ ।

ଅଥବା କିଂ ବହୁନୋଦିତେନ ।
ଆତ୍ମୋଦୟଃ ପରଗ୍ଲାନିଦ୍ୱୟଂ ନୀତିରିୟସ୍ମୃତା ।
ତଦୂରୀକୃତ୍ୟ କୃତିଭିର୍ବାଚସ୍ପତ୍ୟଂ ପ୍ରତାୟ୍ୟତେ । ୯୯ ।

ଅଥବା ଅନ୍ୟ ଅଧିକ କଣ କହାଯିବ, ସାର କଥା ଏହି ଦୁଇ—
ନିଜର ଉଦୟ ଆଉ ବିଦ୍ୱେଷର କ୍ଷୟ, ସମସ୍ତ ନୀତିର ମର୍ମ ଏ ଦୁଇ ବିଷୟ । ଏହି ଦୁଇ ସାର କଥା କରି ଅଙ୍ଗୀକାର, କୃତିଗଣ କରେ ନିଜ ବାଗ୍ମିତା ବିସ୍ତାର । ୯୯ ।

ରାଜା ବିହସ୍ୟୋକ୍ତଂ—ସର୍ବଂ ସତ୍ୟମେତତ୍ । କିନ୍ତୁ ।
ରାଜା ହାସ୍ୟ କରି କହିଲେ,—ଏ କଥା ସତ୍ୟ । କିନ୍ତୁ
ଅନ୍ୟଦୁଚ୍ଛୃଙ୍ଖଳଂ ସତ୍ତ୍ୱମନ୍ୟଚ୍ଛାସ୍ତ୍ରନିୟନ୍ତ୍ରିତଂ ।
ସାମାନାଧିକରଣ୍ୟଂ ହି ତେଜସ୍ତିମିରୟୋଃ କୁତଃ । ୧୦୦ ।

ଯେବେଟି ହୋଇବ ଶତ୍ରୁ ବିପଦେ ପତିତ, ତାକୁ ଅକ୍ରମଣ କରି ଅଟଇ ଉଚିତ । ଯଦ୍ୟପି ଏରୂପ ବିଧି ନୀତି ଶାସ୍ତ୍ରେ କହେ, କିନ୍ତୁ ତାହାପ୍ରବଳର

GPNanda Colln., Digitized by srujanika@gmail.com

ପକ୍ଷେ ବିଧି ନୁହେ । ଆଲୋକ ଅନ୍ଧାର ମଧ୍ୟେ ଯେତେ ଭେଦ ହୁଏ, ପ୍ରକଟେ ସାମାନ୍ୟେ ତେତେ ଜାଣିବ ନିଶ୍ଚୟେ । ୧୦୦ ।

ତତ୍ ଉତ୍ଥାୟ ରାଜା ମୌହୂର୍ତ୍ତିକାବେଦିତଲଗ୍ନେ ପ୍ରସ୍ଥିତଃ । ଅଥ ପ୍ରଣିଧି-ପ୍ରହିତଶ୍ଚରୋ ହିରଣ୍ୟଗର୍ଭସମୀପମାଗତ୍ୟ ପ୍ରଣମ୍ୟୋବାଚ—ଦେବ ! ସମାଗତ-ପ୍ରାୟୋ ରାଜା ଚିତ୍ରବର୍ଣ୍ଣଃ । ସମ୍ପ୍ରତି ମଳୟପର୍ବ୍ବତୋପତ୍ୟକାୟାଂ ସମାବାସିତ-କଟକୋ ବର୍ତ୍ତତେ । ଦୁର୍ଗଶୋଧନଂ ପ୍ରତିକ୍ଷଣମନୁସନ୍ଧାତବ୍ୟଂ । ଯତୋ-ଽସୌ ଗୃଧ୍ରୋ ମହାମନ୍ତ୍ରୀ । କିଞ୍ଚ କେନଚିତ୍ ସହ ତସ୍ୟ ବିଶ୍ୱାସକଥାପ୍ରସଙ୍ଗେନ ଏତଦିଙ୍ଗିତମବଗତଂ ମୟା ଯଦନେନ ପ୍ରାଗେବ କୋଽପ୍ୟସ୍ମଦ୍ଦୁର୍ଗେ ନିଯୁକ୍ତଃ । ଚକ୍ରବାକୋ ବ୍ରୂତେ—ଦେବ ! କାକ ଏବାସୌ ସମ୍ଭବତି । ରାଜାହ—ନ କଦାଚିଦେତତ୍ । ଯଦ୍ୟେବଂ ତଦା କଥଂ ତେନ ଶୁକସ୍ୟାଭିଭବୋ-ଦ୍ୟୋଗଃ କୃତଃ ? ଅପରଂ ଚ ଶୁକସ୍ୟାଗମନାତ୍ତସ୍ୟ ବିଗ୍ରହୋତ୍ସାହଃ । ସ ଚ ଚିରଦିହାସ୍ତେ । ମନ୍ତ୍ରୀ ବଦତି । ତଥାପ୍ୟାଗନ୍ତୁକଃ ଶଙ୍କନୀୟଃ । ରାଜାହ—ଆଗନ୍ତୁକା ଅପି ପ୍ରତ୍ୟୁପକାରିଣୋ ଦୃଶ୍ୟନ୍ତେ । ଶୃଣୁ ।

ପରେ ରାଜା ଉଠି କରି ଦୈବଜ୍ଞ କର୍ତ୍ତୃକ ନିରୂପିତ ଶୁଭଲଗ୍ନେ ଯୁଦ୍ଧ ଯାତ୍ରା କଲେ । ଅନନ୍ତର ଗୂଢ଼ଚରର ପ୍ରେରିତ ଲୋକ ହିରଣ୍ୟଗର୍ଭ ନିକଟକୁ ଆସି ପ୍ରଣାମ କରି କହିଲା,—ମହାରାଜ ! ରାଜା ଚିତ୍ରବର୍ଣ୍ଣ ଆଗତ-ପ୍ରାୟ । ସେ ବର୍ତ୍ତମାନ ମଳୟପର୍ବ୍ବତର ଉପତ୍ୟକାରେ ଶିବିର ସନ୍ନିବେଶ ପୂର୍ବ୍ବକ ଅବସ୍ଥାନ କରୁଅଛନ୍ତି । ଆମ୍ଭମାନଙ୍କର ଦୁର୍ଗବିଷୟରେ ବିଶେଷ ରୂପେ ତତ୍ତ୍ୱାବଧାନ ପ୍ରତିକ୍ଷଣ କରିବା କର୍ତ୍ତବ୍ୟ, କାରଣ ବିପକ୍ଷର ମନ୍ତ୍ରୀ ଗୃଧ୍ର ଅତ୍ୟନ୍ତ ବିଚକ୍ଷଣ ବ୍ୟକ୍ତି । ଆଉ ସେହି ମନ୍ତ୍ରୀ ଯେତେବେଳେ କୌଣସି ଲୋକର ସହିତ ବିଶ୍ୱସ୍ତଭାବେ କଥୋପକଥନ କରୁଥିଲେ, ସେତେବେଳେ ମୁଁ ତାହାଙ୍କ ଆକାର ଇଙ୍ଗିତରୁ ବୁଝିଅଛି ଯେ ଇତିପୂର୍ବେ ବିପକ୍ଷର ନିଯୁକ୍ତ କୌଣସି ଲୋକ ଆସି ଆମ୍ଭମାନଙ୍କର ଦୁର୍ଗ ମଧ୍ୟରେ ପ୍ରବେଶ କରିଅଛି । ଚକ୍ରବାକ କହିଲା,—ମହାରାଜ ! ସେହି ମେଘବର୍ଣ୍ଣ ନାମକ କାକକୁ ମୁଁ ବିପକ୍ଷ ଲୋକ ବୋଲି ଆଶଙ୍କା କରେଁ । ରାଜା କହିଲେ,—ତାହା କେବେ ମଧ୍ୟ ସମ୍ଭବ ନୁହେ । ଯଦି ତାହାହିଁ ହେବ ତେବେ ସେ ସେତେ-ବେଳେ ବିପକ୍ଷ ଦୂତ ଶୁକକୁ ମାରିବାକୁ ଉଦ୍ୟତ ହେଲା କାହିଁକି

GPNanda Colln., Digitized by srujanika@gmail.com

ଅଛ ଦେଖ । ଶୁକ ଅପେକ୍ଷାକୃତ ଯୁଦ୍ଧ ବିଷୟରେ ସେ ହିସାବ କୋ
ଜଣ ଅଛ ଏହି ସ୍ଥାନରେ ସେ ବହୁଦିନ ରହିଅଛି । ମନ୍ତ୍ରୀ କହିଲା,—
ତଥାପି ଆଗନ୍ତୁକ ବୋଲି ତାହାକୁ ଶଙ୍କା କରିବା ଉଚିତ । ରାଜା କହିଲେ,
—ଆଗନ୍ତୁକମାନେ ପ୍ରତ୍ୟୁପକାର ସାଧନ କରିଥାନ୍ତି । ଦେଖ ।—

ପରୋଽପି ହିତବାନ୍ ବନ୍ଧୁର୍ବନ୍ଧୁରପ୍ୟହିତଃପରଃ ।
ଅହିତୋ ଦେହଜୋ ବ୍ୟାଧିର୍ହିତମାରଣ୍ୟମୌଷଧଂ । ୧୦୧ ।

ପରକୀୟ ଅସ୍ମିତ୍ୟୁଷ୍ଟି ଯେବେ କରେ ହିତ, ଆତ୍ମୀୟହିଁ ହୁଏ ପର
କଲେଟି ଅହିତ । ଆପଣା ଦେହର ବ୍ୟାଧି ସେହୁ ଇଷ୍ଟ ନୁହେ, ବନର
ଔଷଧ ଦେଖ ସେହୁ ଇଷ୍ଟ ହୁଏ । ୧୦୧ ।

ଅପରଞ୍ଚ । ଅସୀଦ୍ ବୀରବର ନାମ ଶୂଦ୍ରକସ୍ୟ ମହୀପତେଃ ।
ସେବକଃ ସ୍ୱଳ୍ପକାଳେନ ସ ଦଦୌ ସୁତମାତ୍ମନଃ । ୧୦୨ ।

ବୀରବର ନାମେ ଭୃତ୍ୟ ଶୂଦ୍ରକର ଥିଲା, ସ୍ୱଳ୍ପଦିନେ ପ୍ରଭୁକାର୍ଯ୍ୟେ
ପୁତ୍ର ବଳିଦେଲା । ୧୦୨ ।

ଚକ୍ରବାକୋ ପୃଚ୍ଛତି କଥମେତତ୍ ? ରାଜା କଥୟତି । ଅହଂ ପୁରା
ଶୂଦ୍ରକସ୍ୟ ରାଜ୍ଞଃ କ୍ରୀଡ଼ାସରସି କର୍ପୂରକେଳିନାମ୍ନୋ ରାଜହଂସସ୍ୟ ପୁତ୍ର୍ୟାଂ
କର୍ପୂରମଞ୍ଜର୍ୟ୍ୟାଂ ସହାନୁରାଗବାନଭବଂ । ତତ୍ର ବୀରବରୋ ନାମ ରାଜପୁତ୍ରଃ
କୁତଶ୍ଚିଦ୍ ଦେଶାଦାଗତ୍ୟ ରାଜଦ୍ୱାରମୁପାଗମ୍ୟ ପ୍ରତୀହାରମୁବାଚ—ଅହଂ
ବର୍ତ୍ତନାର୍ଥୀ ରାଜପୁତ୍ରଃ, ମାଂ ରାଜଦର୍ଶନଂ କାରୟ । ତତସ୍ତେନାସୌ
ରାଜଦର୍ଶନଂ କାରିତୋ ବ୍ରୂତେ—ଦେବ ! ଯଦି ମୟା ସେବକେନ ପ୍ରୟୋ-
ଜନମସ୍ତି ତଦାସ୍ମଦ୍ବର୍ତ୍ତନଂ କ୍ରିୟତାଂ । ଶୂଦ୍ରକ ଉବାଚ—କିଂତେ ବର୍ତ୍ତନଂ ।
ବୀରବରେଣୋକ୍ତଂ—ପ୍ରତ୍ୟହଂ ସୁବର୍ଣ୍ଣଶତଚତୁଷ୍ଟୟଂ । ରାଜାହ—କା ତେ
ସାମଗ୍ରୀ ? ବୀରବରୋ ବ୍ରୂତେ—ଦ୍ୱୌ ବାହୂ ତୃତୀୟଶ୍ଚ ଖଡ୍ଗଃ । ରାଜାହ—
ନୈତଚ୍ଛକ୍ୟଂ । ତଚ୍ଛ୍ରୁତ୍ୱା ବୀରବରଃ ପ୍ରଣମ୍ୟ ଚଳିତଃ । ଅଥ ମନ୍ତ୍ରିଭିରୁକ୍ତଂ,
—ଦେବ ! ଦିନଚତୁଷ୍ଟୟସ୍ୟ ବର୍ତ୍ତନଂ ଦତ୍ତ୍ୱା ଜ୍ଞାୟତାମସ୍ୟ ସ୍ୱରୂପଂ, କିମୁପ-
ଯୁକ୍ତୋଽୟମେତାବଦ୍ବର୍ତ୍ତନଂ ଗୃହ୍ଣାତ୍ୟନୁପଯୁକ୍ତୋ ବେତି । ତତୋ ମନ୍ତ୍ରି-
ବଚନାଦାହୂୟ ତାମ୍ବୂଳଂ ଦତ୍ତ୍ୱା ତଦ୍ବର୍ତ୍ତନଂ ଦତ୍ତବାନ୍ ।

GPNanda Colln., Digitized by srujanika@gmail.com

ଚକ୍ରବାକ ପଚାରିଲା,—ସେ କିପରି ? । ରାଜା କହିଲେ ଅମ୍ଭେ ପୂର୍ବେ ଶୂଦ୍ରକରାଜାର କ୍ରୀଡ଼ାସରୋବରରେ କର୍ପୂରକେଳି ନାମକ ରାଜହଂସର କନ୍ୟା କର୍ପୂରମଞ୍ଜରୀ ସହିତ ପରମ—ପ୍ରଣୟ—ସୁଖରେ ବାସ କରୁଥିଲୁଁ । ଏକଦିନ ବୀରବର ନାମକ ଏକ ରାଜପୁତ୍ର କୌଣସି ଦୂର ଦେଶରୁ ଆସି ଶୂଦ୍ରକ ରାଜାଦ୍ୱାରରେ ଉପସ୍ଥିତ ହୋଇ ପ୍ରତିହାରୀଙ୍କି କହିଲା, ମୁଁ ରାଜପୁତ୍ର, ଚାକିରୀ ନିମନ୍ତେ ଆସିଅଛି, ମୋତେ ମହାରାଜାଙ୍କ ସହିତ ସାକ୍ଷାତ କରାଇଦିଅ । ପ୍ରତିହାରୀ ତାହାଙ୍କୁ ରାଜାଙ୍କ ନିକଟକୁ ନେଇଗଲା ପରେ, ସେ କହିଲେ,—ମହାରାଜ ! ଯଦି ମୋତେ ଚାକର କରି ରଖନ୍ତୁ, ତେବେ ମୋହର ବେତନର ବିଷୟ ସ୍ଥିର କରନ୍ତୁ । ଶୂଦ୍ରକ ପଚାରିଲେ,—ତୁମ୍ଭର ବେତନ କେତେ ? ବୀରବର କହିଲେ,—ପ୍ରତ୍ୟହ ଚାରିଶତ ସ୍ୱର୍ଣ୍ଣ ମୁଦ୍ରା । ରାଜା ପଚାରିଲେ,—ତୁମ୍ଭର କାର୍ଯ୍ୟସାଧନର ଉପକରଣ କଣ ? ବୀରବର କହିଲେ,—ମୋହର ଦୁଇ ବାହୁ ଓ ଖଡ୍ଗ, ଏହି ତିନୋଟି ମାତ୍ର । ରାଜା କହିଲେ,—ମୁଁ ଏତେ ବେତନ ଦେଇପାରିବି ନାହିଁ । ତାହା ଶୁଣି ବୀରବର ପ୍ରଣାମ କରି ପ୍ରସ୍ଥାନ କଲା । ଅନନ୍ତର ମନ୍ତ୍ରିମାନେ କହିଲେ ମହାରାଜ ! ଆପାତତଃ ଚାରିଦିନର ବେତନ ଦେଇ ଏହାର ଗୁଣ ପରୀକ୍ଷା କରନ୍ତୁ । ଦେଖନ୍ତୁ ଏ ଏରୂପ ବେତନ ପାଇବାର ଉପଯୁକ୍ତ କି ନାହିଁ । ରାଜା ମନ୍ତ୍ରୀଗଣଙ୍କ କଥାରେ ବୀରବରକୁ ଡକାଇ, ତାହା ହସ୍ତରେ ତାମ୍ବୂଳ ଦେଲେ ଏବଂ ତାହାକୁ ସେହି ବେତନ ଦେଇ ନିଯୁକ୍ତ କଲେ ।

ଯତଃ, ତାମ୍ବୂଳଂ କଟୁତିକ୍ତମୁଷ୍ଣମଧୁରଂ କ୍ଷାରଂ କଷାୟାନ୍ୱିତଂ ।
ବାତଘ୍ନଂ କଫନାଶନଂ କୃମିହରଂ ଦୌର୍ଗନ୍ଧ୍ୟଦୋଷାପହଂ ।
ବକ୍ତ୍ରସ୍ୟାଭରଣଂ ମଳାପହରଣଂ କାମାଗ୍ନିସନ୍ଦୀପନଂ ।
ତାମ୍ବୂଳସ୍ୟ ସଖେ ତ୍ରୟୋଦଶଗୁଣାଃ ସ୍ୱର୍ଗେଽପ୍ୟମୀ ଦୁର୍ଲଭାଃ ।୧୦୩।

କଟୁତିକ୍ତ ମଧୁର ଯେ କ୍ଷାର କଷାୟୁତେ, ବାତ କଫ ନାଶକ ଯେ କୃମିହର ପୁଣ । ଦୁର୍ଗନ୍ଧ ଦୋଷକୁ ହରେ ମୁଖ ଶୁଦ୍ଧି କରେ, ମଳ ନାଶକର କାମଅଗ୍ନି ତେଜ କରେ । ଅତଏ ବନ୍ଧୁ ତାମ୍ବୂଳର ଏହି ତେରଗୁଣ, ସ୍ୱର୍ଗରେ ଖୋଜିଲେମଧ୍ୟ ନ ମିଳଇ ଜାଣ । ୧୦୩ ।

GPNanda Colln., Digitized by srujanika@gmail.com

ବର୍ତ୍ତନଧନସ୍ୟୋକସ୍ତ ରାଜ୍ଞା ପଞ୍ଚଶତଂ ନିରୂପିତଃ । ତଦର୍ଦ୍ଧଂ ବୀରବରେଣ ଦେବେଭ୍ୟୋ ବ୍ରାହ୍ମଣେଭ୍ୟୋ ଦତ୍ତଂ, ସ୍ଥିତସ୍ୟାର୍ଦ୍ଧଂ ଦୁଃଖିତେଭ୍ୟଃ, ତଦବଶିଷ୍ଟଂ ଭୋଜ୍ୟବ୍ୟୟବିଳାସବ୍ୟୟେନ ଚ । ଏତତ୍ ସର୍ବଂ ନିତ୍ୟକୃତ୍ୟଂ କୃତ୍ୱା ରାଜଦ୍ୱାରମହର୍ନିଶଂ ଖଡ୍ଗପାଣିଃ ସେବତେ । ଯଦା ଚ ରାଜା ସ୍ୱୟମାଦିଶତି ତଦା ସ୍ୱଗୃହମପି ଯାତି । ଅଥୈକଦା କୃଷ୍ଣଚତୁର୍ଦ୍ଦଶ୍ୟାଂ ରାତ୍ରୌ ସକରୁଣକ୍ରନ୍ଦନଧ୍ୱନିଂ ସ ରାଜା ଶୁଶ୍ରାବ । ତଚ୍ଛ୍ରୁତ୍ୱା ରାଜା ବ୍ରୂତେ—କଃ କୋଽତ୍ର ଦ୍ୱାରି ତିଷ୍ଠତି ? ତଦା ତେନୋକ୍ତଂ—ଦେବ ! ଅହଂ ବୀରବରଃ । ରାଜୋବାଚ—କ୍ରନ୍ଦନାନୁସରଣଂ କ୍ରିୟତାଂ । ବୀରବରୋଽପି "ଯଥାଜ୍ଞାପୟତି ଦେବ" ଇତ୍ୟୁକ୍ତ୍ୱା ଚଳିତଃ । ରାଜ୍ଞା ଚିନ୍ତିତଂ—ଅୟମେକାକୀ ରାଜପୁତ୍ରୋ ମୟା ସୂଚୀଭେଦ୍ୟେ ତମସି ପ୍ରହିତଃ । ନୈତଦୁଚିତଂ, ଅହମପି ଗତ୍ୱା ନିରୂପୟାମି କିମେତଦେତ । ତତୋ ରାଜାଽପି ଖଡ୍ଗମାଦାୟ ତଦନୁସରଣକ୍ରମେଣ ନଗରଦ୍ୱାରାଦ୍ ବହିର୍ଜଗାମ । ତତୋ ଗତ୍ୱା ବୀରବରେଣ ରୁଦତୀ ରୂପଯୌବନସମ୍ପନ୍ନା ସର୍ବାଳଙ୍କାରଭୂଷିତଂ କାଚିତ୍ ସ୍ତ୍ରୀ ଦୃଷ୍ଟା, ପୃଷ୍ଟା ଚ—କା ତ୍ୱଂ କିମର୍ଥଂ ରୋଦିଷୀତି ? ସ୍ତ୍ରିୟୋକ୍ତଂ—ଅହମେତସ୍ୟ ଶୂଦ୍ରକସ୍ୟ ରାଜଲକ୍ଷ୍ମୀଃ ଚିରମେତସ୍ୟ ଭୁଜଚ୍ଛାୟାୟାଂ ମହତା ସୁଖେନ ବିଶ୍ରାନ୍ତା, ଦେବ୍ୟାପରାଧେନ ତୃତୀୟଦିବସେ ରାଜା ପଞ୍ଚତ୍ୱଂ ଯାସ୍ୟତି, ଅହମନାଥା ଭବିଷ୍ୟାମି । ଇଦାନୀଂ ନାତ୍ର ସ୍ଥାସ୍ୟାମୀତି ରୋଦିମି । ବୀରବରୋ ବ୍ରୂତେ—କଥଂ ପୁନରିହାବାସୋ ଭଗବତ୍ୟା ଭବେତ୍ । ଲକ୍ଷ୍ମୀରୁବାଚ—ଯଦି ତ୍ୱମାତ୍ମନଃ ପୁତ୍ରସ୍ୟ ଶକ୍ତିଧରସ୍ୟ ଦ୍ୱାତ୍ରିଂଶଲ୍ଲକ୍ଷଣୋପେତସ୍ୟ ମସ୍ତକଂ ସ୍ୱହସ୍ତେନ ଛିତ୍ତ୍ୱା ଭଗବତ୍ୟାଃ ସର୍ବମଙ୍ଗଳାୟା ଉପହାରଂ କରୋଷି, ତଦା ରାଜା ଶତାୟୁର୍ଭବିଷ୍ୟତି, ଅହଂ ଚ ପୁନଃ ସୁଖଂ ନିବସାମି । ଇତ୍ୟୁକ୍ତ୍ୱାଽଦୃଶ୍ୟାଽଭବତ୍ । ତତୋ ବୀରବରେଣ ସ୍ୱଗୃହଂ ଗତ୍ୱା ନିଦ୍ରାଳସା ବଧୂଃ ପ୍ରବୋଧିତା ପୁତ୍ରଶ୍ଚ । ତୌ ନିଦ୍ରାଂ ପରିତ୍ୟଜ୍ୟୋପବିଷ୍ଟୌ । ବୀରବରସ୍ତତ୍ ସର୍ବଂ ଲକ୍ଷ୍ମୀବଚନମୁକ୍ତବାନ୍ । ତଚ୍ଛ୍ରୁତ୍ୱା ଶକ୍ତିଧରଃ ସାନନ୍ଦଂ ବ୍ରୂତେ—ଧନ୍ୟୋଽହମେବମ୍ଭୂତଃ, ସ୍ୱାମିରାଜ୍ୟରକ୍ଷାର୍ଥଂ ଯସ୍ୟୋପଯୋଗଃ । ତାତ ତତ୍ କୋଽଧୁନା ବିଳମ୍ବଃ । ଯତଃ, କଦାପି ତାବଦେବଂବିଧେଃ, କର୍ମ୍ମଣି ଏତସ୍ୟ ଦେହସ୍ୟ ବିନିଯୋଗଃ ଶ୍ଳାଘ୍ୟଃ ।

GPNanda Colln., Digitized by srujanika@gmail.com

ବୀରବର ଏହି ବେତନ କିରୂପ ବ୍ୟୟ କରନ୍ତି ରାଜା ତାହାର ଅନୁସନ୍ଧାନ ଗୋପନରେ ନେଉ ଥାନ୍ତି । ବୀରବର ପ୍ରତିଦିନ ବେତନର ଅର୍ଦ୍ଧାଂଶ ଦେବତା ଓ ବ୍ରାହ୍ମଣଙ୍କୁ ଦାନ କରନ୍ତି, ଅବଶିଷ୍ଟ ବେତନର ଅର୍ଦ୍ଧାଂଶ ଦୀନଦୁଃଖିଗଣଙ୍କୁ ଦାନ କରନ୍ତି, ଶେଷରେ ଅବଶିଷ୍ଟ ଯାହା ରହେ ତାହା ସେ ଭକ୍ଷ୍ୟଦ୍ରବ୍ୟ ଓ ବିଳାସଦ୍ରବ୍ୟରେ ବ୍ୟୟ କରନ୍ତି । ସେ ଏହି ସମସ୍ତ ନିତ୍ୟକର୍ମ ସମାପନ କରି ଖଡ୍ଗଧାରଣପୂର୍ବକ ଦିବା ନିଶି ରାଜଦ୍ୱାରରେ ଉପସ୍ଥିତ ଥାନ୍ତି । ରାଜା ଅନୁମତି ନ ଦେଲେ ନିଜଘରକୁ ମଧ୍ୟ ଯାଆନ୍ତି ନାହିଁ । ଅନନ୍ତର ଏକଦିନ ଘୋରକୃଷ୍ଣଚତୁର୍ଦ୍ଦଶୀ ରାତ୍ରରେ ରାଜା ଶୁଣିଲେ— କିଏ ଅତିଗମ୍ଭୀର କରୁଣସ୍ୱରରେ ରୋଦନ କରୁଅଛି । ତାହା ଶୁଣି ରାଜା କହିଲେ,— ଏହି ଦ୍ୱାରଦେଶରେ ବର୍ତ୍ତମାନ କେଉଁ କେଉଁ ପ୍ରହରୀମାନେ ନିଯୁକ୍ତ ଅଛନ୍ତି ? । ତାହା ଶୁଣି ବୀରବର କହିଲେ,— ମହାରାଜ ! ମୁଁ ବୀରବର ଉପସ୍ଥିତ ଅଛି ! ରାଜା କହିଲେ, ବୀରବର ! ଏହି ରୋଦନ ଧ୍ୱନିର ଅନୁସନ୍ଧାନ କରି ଆସ । ବୀରବର ମଧ୍ୟ "ଯେ ଆଜ୍ଞା ମହାରାଜ" ଏକଥା କହି ତତ୍କ୍ଷଣାତ୍ ପ୍ରସ୍ଥାନକଲେ । ବୀରବର ପ୍ରସ୍ଥାନକଲାପରେ ରାଜା ଭାବିଲେ,—ଏହି ରାଜପୁତ୍ରକୁ ଏ ଘୋରତର ଅନ୍ଧକାରରେ ଏକାକୀ ପଠାଇ ଭଲକାର୍ଯ୍ୟ କଲି ନାହିଁ । ଅତଏବ ମୁଁ ମଧ୍ୟ ଯାଇ ଅନୁସନ୍ଧାନ କରି ଦେଖେ ଘଟଣା କଣ, ଅନନ୍ତର ରାଜା ମଧ୍ୟ ଖଡ୍ଗ ଗ୍ରହଣପୂର୍ବକ ବୀରବରର ଅନୁସରଣ କଲେ । ଏବଂ କ୍ରମେ ନଗରଦ୍ୱାର ଅତିକ୍ରମକରି ଗଲେ । ଏଣେ ବୀରବର ଯାଇ ଦେଖିଲେ ଯେ,—ରୂପଯୌବନସମ୍ପନ୍ନା ସର୍ବାଳଙ୍କାରଭୂଷିତା ଏକ ରମଣୀ ରୋଦନ କରୁଅଛନ୍ତି । ଏହା ଦେଖି ତାହାଙ୍କୁ ପଚାରିଲେ,—ଆପଣ କି ନିମନ୍ତେ ରୋଦନ କରୁଅଛନ୍ତି ? ସେହି ନାରୀ ଉତ୍ତର କଲେ,—ମୁଁ ଏହି ଶୂଦ୍ରକରାଜାର ରାଜଲକ୍ଷ୍ମୀ । ମୁଁ ଏହାର ଭୁଜଚ୍ଛାୟାର ଆଶ୍ରୟରେ ବହୁକାଳ ପରମସୁଖରେ ବିଶ୍ରାମ କରୁଥିଲି । ଦେବୀ ସର୍ବମଙ୍ଗଳା ନିକଟରେ ଅପରାଧ କରିବାରୁ ରାଜା ଆଜଠାରୁ ତୃତୀୟ ଦିନରେ କାଳଗ୍ରାସରେ ପତିତ ହେବେ । ମୁଁ ଏହାର ବିରହରେ ଅନ୍ୟଥା ହେବି । ଏବେ ବର୍ତ୍ତମାନ ଏହାର ଆଶ୍ରୟ ପରିତ୍ୟାଗ କରିବାକୁ ହେବ-ବୋଲି ମୁଁ ରୋଦନ କରୁଅଛି । ବୀରବର କହିଲେ, ଭଗବତି ! କି ଉପାୟରେ ଆପଣ ପୁନରାୟ ଏ ସ୍ଥାନରେ ସ୍ଥାୟୀହୋଇ ପାରନ୍ତି ? । ଲକ୍ଷ୍ମୀ

GPNanda Colln., Digitized by srujanika@gmail.com

କହିଲେ,—ଯଦି ତୁମ୍ଭେ ବତିଶଟି ଶୁଭଲକ୍ଷଣସମନ୍ୱିତ ତୁମ୍ଭର ଏକମାତ୍ର ପୁତ୍ର ଶକ୍ତିଧରର ମସ୍ତକ ସ୍ୱହସ୍ତରେ ଛେଦନ କରି ଭଗବତୀ ସର୍ବମଙ୍ଗଳାଙ୍କୁ ଉପହାର ଦେବ, ତେବେ ରାଜାଙ୍କର ଶତବର୍ଷ ପରମାୟୁ ହେବ, ମୁଁ ମଧ୍ୟ ଏହି ସ୍ଥାନରେ ଚିରକାଳ ସୁଖରେ ବାସ କରିପାରିବି । ଲକ୍ଷ୍ମୀ ଏହା କହି ଅନ୍ତର୍ଦ୍ଧାନ ହେଲେ । ଅନନ୍ତର ବୀରବର ଗୃହକୁ ଆସି ନିଦ୍ରାଭିଭୂତ-ପତ୍ନୀ ଓ ପୁତ୍ରକୁ ଜାଗରିତ କଲେ । ସେମାନେ ନିଦ୍ରା ତ୍ୟାଗ କରି ଉଠିଲେ, ବୀରବର ଲକ୍ଷ୍ମୀଙ୍କର ଏହି ସମସ୍ତ କଥା ସେମାନଙ୍କୁ କହିଲେ । ତାହା ଶୁଣି ଶକ୍ତି-ଧର ପରମାନନ୍ଦରେ କହିଲେ,—ଆହା ! ଧନ୍ୟ ମୋହର ଜୀବନ ! ମୁଁ ଆଜି ଏ ଜୀବନ ପ୍ରତିପାଳକ ପ୍ରଭୁର ରାଜ୍ୟରକ୍ଷାନିମିତ୍ତ ପ୍ରଦାନ କରି ସାର୍ଥକ କରିବି ! । ହେ ପିତଃ ! ଆଉ ଏ କାର୍ଯ୍ୟରେ ବିଳମ୍ବ କି ? ଏହି ଦେହ ଦାନ କରି କେବେ ମଧ୍ୟ ଯଦି ଏପରି ମହତ୍ କାର୍ଯ୍ୟ ସାଧନ କରି ପାରିଯାଏ, ତେବେ ତାହାଠାରୁ ଆଉ ଗୌରବର ବିଷୟ କଣ ଅଛି ? । କାରଣ,—

ଧନାନି ଜୀବିତଂ ଚୈବ ପରାର୍ଥେ ପ୍ରାଜ୍ଞ ଉତ୍ସୃଜେତ୍ ।
ସନ୍ନିମିତ୍ତେ ବରଂ ତ୍ୟାଗୋ ବିନାଶେ ନିୟତେ ସତି । ୧୦୪ ।

ଧନ ଆଉ ଜୀବନକୁ ପରଲାଗି ଜାଣ, ଯେହେତୁ ତ୍ୟାଗକରେ ପ୍ରାଜ୍ଞ ଯାହେ ବିଚକ୍ଷଣ । ସବୁକାଳେ ଏ ଜୀବନ ନ ରହିବ କେବେ, ସୁକାର୍ଯ୍ୟେ ତ୍ୟଜିଲେ ପ୍ରାଣ ସାର୍ଥକ ଏ ଭୂତେ । ୧୦୪ ।

ଶକ୍ତିଧରସ୍ୟମାତା ବ୍ରୂତେ—ଯଦ୍ୟସ୍ମତ୍ କୁଳୋଚିତଂ ଯଦେତନ୍ନ କର୍ତ୍ତବ୍ୟଂ, ତଦା ଗୃହୀତରାଜବର୍ତ୍ତନସ୍ୟ ନିସ୍ତାରଃ କଥଂ ଭବତି ? ଇତ୍ୟାଲୋଚ୍ୟ ସର୍ବେ ସର୍ବମଙ୍ଗଳାସ୍ଥାନଂ ଗତାଃ । ତତ୍ର ସର୍ବମଙ୍ଗଳାଂ ସମ୍ପୂଜ୍ୟ ବୀରବରୋ ବ୍ରୂତେ—ଦେବି ! ପ୍ରସୀଦ, ବିଜୟତାଂ ଶୂଦ୍ରକୋ ମହାରାଜଃ ଗୃହ୍ୟତାମୟ-ମୁପହାରଃ । ଇତ୍ୟୁକ୍ତ୍ୱା ପୁତ୍ରସ୍ୟ ଶିରଶ୍ଛେଦ । ତତୋ ବୀରବରଶ୍ଚିନ୍ତୟାମାସ—ଗୃହୀତରାଜବର୍ତ୍ତନସ୍ୟ ନିସ୍ତାରଃ କୃତଃ । ଅଧୁନା ନିଷ୍ପୁତ୍ରସ୍ୟ ମେ ଜୀବନଂ ବିଡ଼ମ୍ବନଂ ଇତ୍ୟାଲୋଚ୍ୟାତ୍ମନଃ ଶିରଶ୍ଛେଦ । ତତଃ ସ୍ତ୍ରିୟାପି ସ୍ୱାମିପୁତ୍ରଯୋଃ ଶୋକାର୍ତ୍ତୟା ତଦନୁଷ୍ଠିତଂ । ଏତତ୍ସର୍ବଂ ଶ୍ରୁତ୍ୱା ଦୃଷ୍ଟ୍ୱା ଚ ରାଜା ସାଶ୍ଚର୍ଯ୍ୟଂ ଚିନ୍ତୟାମାସ ।

GPNanda Colln., Digitized by srujanika@gmail.com

ଶକ୍ତିଧରର ଜନନୀ କହିଲେ,—ଯଦି ଅମ୍ଭେମାନେ କୁଳୋଚିତ ଏହି ଧର୍ମ ପାଳନ ନ କରୁଁ, ତେବେ ଅମ୍ଭେ ଯେ ରାଜାର ବେତନ ଗ୍ରହଣ କରିଅଛୁଁ, ସେ ଋଣରୁ କିପରି ନିସ୍ତାର ପାଇବୁଁ ? ଏହିପରି ସ୍ଥିର କରି ସେମାନେ ସମସ୍ତେ ସର୍ବମଙ୍ଗଳାଙ୍କ ମନ୍ଦିରକୁ ଗମନ କଲେ । ସେଠାରେ ସର୍ବମଙ୍ଗଳାଙ୍କୁ ଯଥାବିଧାନରେ ପୂଜାକରି ବୀରବର କହିଲେ,—ଦେବି ସର୍ବମଙ୍ଗଳେ ! ପ୍ରସନ୍ନ ହୁଅନ୍ତୁ ମହାରାଜ ଶୂଦ୍ରକଙ୍କୁ ଚିରଜୀବୀ କରନ୍ତୁ, ଏହାକୁ ଗ୍ରହଣ କରନ୍ତୁ । ଏହା କହି ପୁତ୍ରର ମସ୍ତକ ଛେଦନ କଲେ । ଅନନ୍ତର ବୀରବର ଭାବିଲେ,—ମୁଁ ତ ମହାରାଜାଙ୍କ ଋଣରୁ ମୁକ୍ତ ହେଲି । ବର୍ତ୍ତମାନ ପୁତ୍ରଠାରୁ ବଞ୍ଚିତ ହୋଇ ଜୀବନ ଧାରଣ କରିବା ବିଡ଼ମ୍ବନା ମାତ୍ର ଏହିପରି ଚିନ୍ତା କରି ନିଜ ମସ୍ତକ ଛେଦନ କଲେ । ସ୍ତ୍ରୀ ମଧ୍ୟ ପତିପୁତ୍ରଙ୍କ ଶୋକରେ ସେହିପରି କଲା । ରାଜା ଏହି ସମସ୍ତ ବ୍ୟାପାର ଦେଖି ଓ ଶୁଣି ବିସ୍ମିତ ହୋଇ କହିଲେ,—

ଜୀବନ୍ତି ଚ ମ୍ରିୟନ୍ତେ ଚ ମଦ୍ବିଧାଃ କ୍ଷୁଦ୍ରଜନ୍ତବଃ ।
ଅନେନ ସଦୃଶୋ ଲୋକେ ନ ଭୂତୋ ନ ଭବିଷ୍ୟତି ।୧୦୫।

ମୋ ତୁଲ୍ୟ କ୍ଷୁଦ୍ର ନର ହଜାର ହଜାର, ଜନ୍ମ ଓ ମରଣ କେତେ ଅସଂଖ୍ୟ ଅପାର । ଏହାର ସଦୃଶ କିନ୍ତୁ ପୁରୁଷ ରତନ, ଏ ଜଗତେ ନ ହୁଅଇ ନ ହେବ ଏସନ ।୧୦୫।

ଏତତ୍ ପରିତ୍ୟକ୍ତେନ ମମ ରାଜ୍ୟେନାପି କିଂ ପ୍ରୟୋଜନଂ । ତତଃ ସ୍ୱଶିରଶ୍ଛେତ୍ତୁମୁଲ୍ଲସିତଃ ଖଡ୍ଗଃ ଶୂଦ୍ରକେଣାପି । ଅଥ ଭଗବତ୍ୟା ସର୍ବମଙ୍ଗଳୟା ପ୍ରତ୍ୟକ୍ଷଭୂତୟା ରାଜା କରେ ଧୃତଃ ଉକ୍ତଶ୍ଚ—ପୁତ୍ର ! ଅଲଂ ସାହସେନ ଇଦାନୀଂ ତେ ରାଜ୍ୟଭଙ୍ଗୋ ନାସ୍ତି । ରାଜା ସାଷ୍ଟାଙ୍ଗଂ ପ୍ରଣମ୍ୟୋବାଚ—ଦେବି ! ନ ମେ ରାଜ୍ୟେନ ଜୀବିତେନ ବା ପ୍ରୟୋଜନମସ୍ତି । ଯଦି ମମାନୁକମ୍ପା କ୍ରିୟତେ ତଦା ମମ ଆୟୁଃଶେଷେଣାୟଂ ସଦାରପୁତ୍ରୋ ରାଜପୁତ୍ରୋ ଜୀବତୁ । ଅନ୍ୟଥାହଂ ଯଥାପ୍ରାପ୍ତାଂ ଗତିଂ ଗଚ୍ଛାମି । ଭଗବତ୍ୟୁବାଚ—ପୁତ୍ର ! ଅନେନ ତେ ସତ୍ତ୍ୱୋତ୍କର୍ଷେଣ ଭୃତ୍ୟବାତ୍ସଲ୍ୟେନ ଚ ସର୍ବଥା ସନ୍ତୁଷ୍ଟାସ୍ମି । ଗଚ୍ଛ ବିଜୟୀ ଭବ । ଅୟମପି ସପରିବାରୋ ରାଜପୁତ୍ରୋ ଜୀବତୁ । ଇତ୍ୟୁକ୍ତ୍ୱା ଦେବୀ ଅଦୃଶ୍ୟାଽଭବତ୍ । ତତୋ ବୀରବରଃ



GPNanda Colln., Digitized by srujanika@gmail.com

ସପୁତ୍ରଦାରଃ ପ୍ରାପ୍ତଜୀବନଃ ସ୍ୱଗୃହଂ ଗତଃ । ରାଜାପି ତୈରଲକ୍ଷିତଃ ସତ୍ୱରଂ ଅନ୍ତଃପୁରଂ ପ୍ରବିଷ୍ଟଃ । ଅଥ ବୀରବରୋ ଦ୍ୱାରସ୍ଥଃ ପୁନଃ ଭୂପାଳେନ ପୃଷ୍ଟଃ ସନ୍ ବ୍ରୂତେ, ଦେବ ! ସା ରୁଦତୀ ସ୍ତ୍ରୀ ମାମବଲୋକ୍ୟାଦୃଶ୍ୟାଭବତ୍ । ନ କାପ୍ୟନ୍ୟା ବାର୍ତ୍ତା ବିଦ୍ୟତେ । ତଦ୍ବଚନମାକର୍ଣ୍ଣ୍ୟ ସନ୍ତୁଷ୍ଟୋ ରାଜା ସାଶ୍ଚର୍ଯ୍ୟଂ ଚିନ୍ତୟାମାସ—କଥମୟଂ ଶ୍ଲାଘ୍ୟତାଂ ମହାସତ୍ତ୍ୱଃ ? ଯତଃ ।

ଏପରି କୃତ୍ୟବିଧାନରେ ଅମ୍ଭର ରାଜ୍ୟରେ ପ୍ରୟୋଜନ କଣ ? । ଏହା ଭାବିକରି ଶୂଦ୍ରକ ନିଜ ମସ୍ତକ ଛେଦନ କରିବାକୁ ଯେତେବେଳେ ଖଡ୍ଗ ଉଠାଇଲେ, ସେହିକ୍ଷଣି ଭଗବତୀ ମଙ୍ଗଳା ସ୍ୱୟଂ ପ୍ରତ୍ୟକ୍ଷହୋଇ ରାଜାର ହସ୍ତ ଧାରଣକରି କହିଲେ,—ବତ୍ସ ! କ୍ଷାନ୍ତହୁଅ ! କ୍ଷାନ୍ତହୁଅ ! ଏପରି ସାହସ କାର୍ଯ୍ୟ କରନାହିଁ । ରାଜା ତାହାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି କହିଲେ, ଦେବି ! ଅମ୍ଭର ରାଜ୍ୟ ବା ଜୀବନେ ପ୍ରୟୋଜନ ନାହିଁ । ଯଦି ମୋହର ପ୍ରତି ଆପଣ ଅନୁକମ୍ପା କରନ୍ତି, ତେବେ ସ୍ତ୍ରୀ ପୁତ୍ରର ସହିତ ଏହି ରାଜପୁତ୍ରଙ୍କୁ ଅମ୍ଭର ଅବଶିଷ୍ଟ ପରମାୟୁ ଦାନ କରି ପୁନର୍ବାର ଜୀବିତ କରନ୍ତୁ । ନତୁବା, ଏମାନଙ୍କର ଯେପରି ମୋହର ମଧ୍ୟ ସେହିପରି ଗତି । ଭଗବତୀ କହିଲେ,—ପୁତ୍ର ! ଅମ୍ଭେ ତୁମ୍ଭର ଏହି ଅଲୌକିକ ସାଧୁତାରେ ଓ ଭୃତ୍ୟବାତ୍ସଲ୍ୟରେ ତୁମ୍ଭ ଉପରେ ସର୍ବତୋଭାବେ ସନ୍ତୁଷ୍ଟ ହୋଇଅଛୁଁ । ଯାଅ ବତ୍ସ ! ତୁମ୍ଭେ ଚିର-ବିଜୟୀ ହୁଅ । ଆଉ ଏହି ରାଜପୁତ୍ର ମଧ୍ୟ ସପରିବାରରେ ଜୀବନ ଲାଭ କରୁ । ଏହା କହି ଦେବୀ ଅନ୍ତର୍ଦ୍ଧାନ ହେଲେ । ବୀରବର ସ୍ତ୍ରୀ ପୁତ୍ରର ସହିତ ପୁନର୍ବାର ଜୀବନ ଲାଭ କରି ଗୃହକୁ ଗମନ କଲା । ରାଜା ମଧ୍ୟ ସେମାନଙ୍କର ଅଲକ୍ଷିତଭାବେ ଦ୍ରୁତପଦରେ ଅନ୍ତଃପୁରକୁ ଆଗମନ କଲେ । ଅନନ୍ତର ବୀରବର ପୁନର୍ବାର ରାଜଦ୍ୱାରେ ଉପସ୍ଥିତ ହେଲାରୁ ରାଜା ତାହାଙ୍କୁ ସମ୍ବାଦ ପଚାରିବାରୁ ବୀରବର କହିଲେ—ମହାରାଜ ! ଏକ ସ୍ତ୍ରୀ-ଲୋକ ରୋଦନ କରୁଥିଲା, ସେ ଅମ୍ଭଙ୍କୁ ଦେଖିଲାକ୍ଷଣି ଅଦୃଶ୍ୟ ହେଲା । ଏହା ଭିନ୍ନ ଆଉ କିଛି ସମ୍ବାଦ ନାହିଁ । ତାହାର ଏହି କଥା ଶୁଣି ରାଜା ଅଧିକତର ପ୍ରୀତ ଓ ବିସ୍ମିତ ହୋଇ ଭାବିଲେ—ଏପରି ମହାପୁରୁଷ କେବେ ମଧ୍ୟ ଆତ୍ମଶ୍ଲାଘା କରିବ ନାହିଁ । କାରଣ,—

ପ୍ରିୟଂ ବ୍ରୂୟାଦକୃପଣଃ ଶୂରଃ ସ୍ୟାଦବିକତ୍ଥନଃ ।
ଦାତା ସତ୍ପାତ୍ରବର୍ଷୀ ସ୍ୟାତ୍ ପ୍ରଗଲ୍ଭଃ ସ୍ୟାଦନିଷ୍ଠୁରଃ । ୧୦୨ ।

GPNanda Colln., Digitized by srujanika@gmail.com

ପ୍ରିୟ କଥା କେବେ ସଦା ହୋଇଣ ଉଦାର, ଶୂର ହୋଇ ଶ୍ଲାଘା ନ କରିବ ଆପଣାର । ଦାତାହୋଇ ପାତ୍ରେ ଦାନ କରିବ ପ୍ରଚୁର, ସାହସୀ ହୋଇବ କିନ୍ତୁ ନ ହେବ ନିଷ୍ଠୁର । ୧୦୬ ।

ଏତନ୍ମହାପୁରୁଷଲକ୍ଷଣଂ ଏତସ୍ମିନ୍ ସର୍ବମସ୍ତି । ତତଃ ସ ରାଜା ପ୍ରାତଃ ଶିଷ୍ଟସଙ୍ଗଂ କୃତ୍ୱା ସର୍ବବୃତ୍ତାନ୍ତଂ ପ୍ରସ୍ତୁତ୍ୟ ପ୍ରସାଦାତ୍ ତସ୍ମୈ କର୍ଣ୍ଣାଟ-ରାଜ୍ୟଂ ଦଦୌ । ତତ୍ କିମାଗନ୍ତୁରେବ ବହୁଭିଃ, ତତ୍ରାପି ଉତ୍ତମାଧମମଧ୍ୟମାଃ ସନ୍ତୀତି । ଚକ୍ରବାକୋ ବ୍ରୂତେ,

ମହାପୁରୁଷର ଏହି ସମସ୍ତ ଲକ୍ଷଣ ଏଥିରେ ବିଦ୍ୟମାନ ଅଛି । ଅନନ୍ତର ରାଜା ପ୍ରଭାତରେ ସମସ୍ତ ଶିଷ୍ଟଗଣଙ୍କୁ ସଭାକୁ ଆହ୍ୱାନ କରି ରାତିର ସମସ୍ତ ଘଟଣା ସେମାନଙ୍କ ନିକଟରେ ପ୍ରକାଶ କଲେ ଏବଂ ରାଜପ୍ରସାଦ ସ୍ୱରୂପ ବୀରବରଙ୍କୁ କର୍ଣ୍ଣାଟରାଜ୍ୟ ପ୍ରଦାନ କଲେ । ଅତଏବ ହେଲେ ମଧ୍ୟ ଅଭ୍ୟାଗତ ହୁଏ ? । ଆଗନ୍ତୁକଗଣମଧ୍ୟରେ ଅଛନ୍ତି ଉତ୍ତମ ମଧ୍ୟମ ଅଧମ ତିନପ୍ରକାର ଥାଇ ପାରନ୍ତି । ଚକ୍ରବାକ କହିଲା,—

ଯୋଽକାର୍ଯ୍ୟଂ କାର୍ଯ୍ୟବଚ୍ଛାସ୍ତି ସ କିଂ ମନ୍ତ୍ରୀ ନୃପେଚ୍ଛୟା ।
ବରଂ ସ୍ୱାମିମନୋଦୁଃଖଂ ତନ୍ନାଶୋ ନ ତ୍ୱକାର୍ଯ୍ୟତଃ । ୧୦୭ ।

ତୋଷିବାକୁ ରାଜାମନ ଯେ ବୋଲେ ଅହିତ, ସେ ଜନ ମନ୍ତ୍ରୀର ଯୋଗ୍ୟ ନୁହେ କଦାଚିତ । ବିରକ୍ତ ହୋଇଲେ ତାଙ୍କୁ ସୁମନ୍ତ୍ରଣା ଦେବ; ଅକାର୍ଯ୍ୟ ତଥାପି ତାଙ୍କୁ ତୁଷ୍ଟ ନ କରିବ । ୧୦୭ ।

ବୈଦ୍ୟୋ ଗୁରୁଶ୍ଚ ମନ୍ତ୍ରୀ ଚ ଯସ୍ୟ ରାଜ୍ଞଃ ପ୍ରିୟମ୍ବଦଃ ।
ଶରୀରଧର୍ମ୍ମ କୋଷେଭ୍ୟଃ କ୍ଷିପ୍ରଂ ସ ପରିହୀୟତେ । ୧୦୮ ।

ବୈଦ୍ୟ, ଗୁରୁ ଆଉ ମନ୍ତ୍ରୀ ଏହି ତିନିଜଣ, ପ୍ରିୟ ଭାଷେ ସଦା ତୋଷେ, ଯେ ରାଜାର ମନ । ଅଚିରେଣ୍ଟି ସେ ରାଜାର ଜାଣିବ ନିଶ୍ଚୟେ; ଦେହ, ଧର୍ମ୍ମ, ଆଉ ଅର୍ଥ ସବୁ ନଷ୍ଟ ହୁଏ । ୧୦୮ ।

ଶୃଣୁ ଦେବ ! ପୁଣ୍ୟାଲ୍ଲବ୍ଧଂ ଯଦେକେନ ତନ୍ମମାପି ଭବିଷ୍ୟତି ।
ହତ୍ୱା ଭିକ୍ଷୁଂ ଯତୋ ମୋହାନ୍ନିଧ୍ୟର୍ଥୀ ନାପିତୋ ମୃତଃ । ୧୦୯ ।

ଶୁଣନ୍ତୁ ମହାରାଜ !—ପୁଣ୍ୟବଳେ ଯେଉଁ ଧନ ଲଭିଲେ ଏକଜଣ,

GPNanda Colln., Digitized by srujanika@gmail.com

ଜନା ପୁଣ୍ୟେ ଅନ୍ୟ ନାହିଁ ଲଭେ ସେହି ଧନ । ନିର୍ବୋଧ ନାପିତ ଦେଖ
ଧନର ଆଶାରେ, ଭିକ୍ଷୁକ ମାରଣ ଯେସେ ପ୍ରାଣେ କୁଟି ହାରେ । ୧୦୯ ।

ରାଜା ପୃଚ୍ଛତି—କଥମେତତ୍ ? ମନ୍ତ୍ରୀ କଥୟତି । ଅସ୍ତ୍ୟଯୋଧ୍ୟାୟାଂ ପୁରି ଚୂଡ଼ାମଣିର୍ନାମ କ୍ଷତ୍ରିୟଃ । ତେନ ଧନାର୍ଥିନା ମହତା କାୟକ୍ଲେଶେନ ଭଗବାଂଶ୍ଚନ୍ଦ୍ରାର୍ଦ୍ଧଚୂଡ଼ାମଣିଶ୍ଚିରମାରାଧିତଃ । ତତଃ କ୍ଷୀଣପାପୋଽସୌ ସ୍ୱପ୍ନେ ଦର୍ଶନଂ ଲବ୍ଧ୍ୱା ଭଗବତଃ ପ୍ରସାଦାତ୍ ଯକ୍ଷେଶ୍ୱରେଣାଦିଷ୍ଟଃ—ଯତ୍ତ୍ୱମଦ୍ୟ ପ୍ରାତରେବ କ୍ଷୌରଂ କାରୟିତ୍ୱା ଲଗୁଡ଼ହସ୍ତଃ ସନ୍ ସ୍ୱଗୃହଦ୍ୱାରି ନିଭୃତଂ ସ୍ଥାସ୍ୟସି । ତତୋ ଯମେବାଗତଂ ଭିକ୍ଷୁକଂ ପ୍ରାଙ୍ଗଣେ ପଶ୍ୟସି ତଂ ନିର୍ଦ୍ଦୟଂ ଲଗୁଡ଼ପ୍ରହାରେଣ ହନିଷ୍ୟସି । ତତୋଽସୌ ଭିକ୍ଷୁକସ୍ତତ୍କ୍ଷଣାତ୍ ସୁବର୍ଣ୍ଣପୂର୍ଣ୍ଣ କଳଶୋ ଭବିଷ୍ୟତି । ତେନ ତ୍ୱଂ ଯାବଜ୍ଜୀବଂ ସୁଖୀ ଭବିଷ୍ୟସି । ତଦନନ୍ତରଂ ତଥାନୁଷ୍ଠିତେ ସତି ତଦ୍‌ବୃତ୍ତଂ । ତତଃ କ୍ଷୌରକରଣାୟାନୀତେନ ନାପିତେନ ତତ୍‌ସର୍ବମାଲୋକ୍ୟ ଚିନ୍ତିତଂ । ଅହୋ ନିଧିପ୍ରାପ୍ତେରୟମୁପାୟଃ । ତଦହମପ୍ୟେବଂ କିଂ ନ କରୋମି ? ତତଃ ପ୍ରଭୃତି ସ ନାପିତଃ ପ୍ରତ୍ୟହଂ ତଥାବିଧଲଗୁଡ଼ହସ୍ତଃ ସୁନିଭୃତଂ ଭିକ୍ଷୋରାଗମନମପେକ୍ଷତେ । ଏକଦା ତେନ ତଥା ପ୍ରାପ୍ତୋ ଭିକ୍ଷୁର୍ଲଗୁଡ଼େନ ହତ୍ୱା ବ୍ୟାପାଦିତଃ । ତସ୍ମାଦପରାଧାତ୍ ସୋଽପି ନାପିତୋ ରାଜପୁରୁଷୈର୍ବ୍ୟାପାଦିତଃ । ଅତୋଽହଂ ବ୍ରବୀମି—ପୁଣ୍ୟୈର୍ଲବ୍ଧଂ ଯଦେକେନ ଇତ୍ୟାଦି । ରାଜାହ—

ରାଜା କହିଲେ,—ସେ କିରୂପ ? ମନ୍ତ୍ରୀ କହିଲା, ଅଯୋଧ୍ୟା ନଗରରେ ଚୂଡ଼ାମଣି ନାମକ ଏକ କ୍ଷତ୍ରିୟ ଥିଲା । ସେ ଧନକାମନାରେ ବହୁକାଳ କଠୋର କାୟକ୍ଲେଶ ସ୍ୱୀକାର କରି ଭଗବାନ୍ ଚନ୍ଦ୍ରଶେଖର ହରଙ୍କ ଆରାଧନା କଲା । ତହିଁରେ ତାହାର ସମସ୍ତ ଦୁରଦୃଷ୍ଟ ଦୂର ହେଲା ଏବଂ ଭଗବାନ୍ ମହାଦେବଙ୍କ ଅନୁଗ୍ରହରୁ ଯକ୍ଷେଶ୍ୱର କୁବେର ସ୍ୱପ୍ନରେ ଏହି ପ୍ରତ୍ୟାଦେଶ କଲେ ଯେ, ତୁମ୍ଭେ ଆଜ ପ୍ରାତଃକାଳରେ କ୍ଷୌରକାର୍ଯ୍ୟ ସମ୍ପନ୍ନ କରି ଯଷ୍ଟି ହସ୍ତରେ ନେଇ ନିଜ ଘରର ଦ୍ୱାରଦେଶରେ ଲୁଚିକରି ଥିବ ପରେ ତୁମ୍ଭର ଘରର ପ୍ରାଙ୍ଗଣରେ କୌଣସି ଭିକ୍ଷୁକକୁ ଆସିବାର ଦେଖିଲେ ତାହାକୁ ନିର୍ଦ୍ଦୟଭାବରେ ଯଷ୍ଟି ମାରି ବଧ କରିବ । ସେହି ଭିକ୍ଷୁକ ତତ୍-

GPNanda Colln., Digitized by srujanika@gmail.com

କ୍ଷଣାତ୍ ସୁବର୍ଣ୍ଣପୂର୍ଣ୍ଣ କଳଶ ହେବ । ତୁମ୍ଭେ ସେହି ସୁବର୍ଣ୍ଣ ପାଇ ଯାବଜ୍ଜୀବନ ସୁଖରେ କଟାଇ ପାରିବ । ଅନନ୍ତର ସେ ପ୍ରାତଃକାଳରେ ସ୍ୱପ୍ନବୃତ୍ତାନ୍ତ ଅନୁରୂପ କାର୍ଯ୍ୟ କରି ନିଧି ଲାଭ କଲା । ସେ କ୍ଷୌରକର୍ମ ପାଇଁ ଯେଉଁ ନାପିତକୁ ଆଣିଥିଲା ସେ ବ୍ୟକ୍ତି ଏହି ସମସ୍ତ ବ୍ୟାପାର ଦେଖି ଭାବିଲା,— ଅହୋ ! ଏହିତ ନିଧି ଲାଭ କରିବାର ଉପାୟ । ତେବେ ମୁଁ କାହିଁକି ଏ ଉପାୟରେ ନିଧି ଲାଭ ନ କରିବି ? । ତଦବଧି ସେହି ନାପିତ ପ୍ରତିଦିନ ସେହିରୂପ ଯଷ୍ଟି ହସ୍ତରେ ନେଇ ଭିକ୍ଷୁକଙ୍କର ଆଗମନ ପ୍ରତୀକ୍ଷା କରିବାକୁ ଲାଗିଲା । ଏକଦିନ ସେ ଏକଜଣ ଭିକ୍ଷୁକକୁ ଦୂରରୁ ଆସିବାର ଦେଖି ଲଗୁଡ଼ାଘାତରେ ତାହାକୁ ବଧ କଲା । ସେହି ହତ୍ୟାପରାଧରେ ରାଜପୁରୁଷମାନେ ତାହାର ପ୍ରାଣଦଣ୍ଡ କଲେ । ଏହିନିମନ୍ତେ ମୁଁ କହୁଅଛି ଯେ "ପୁଣ୍ୟବଳେ ଯେଉଁ ଧନ ଲଭେ ଏକ ଜଣ"—ଇତ୍ୟାଦି । ରାଜା କହିଲେ,—

ପୁରାବୃତ୍ତକଥୋଦ୍‌ଗାରୈଃ କଥଂ ନିର୍ଣ୍ଣୀୟତେ ପରଃ ।
କିଂସ୍ୟାନ୍ନିଷ୍କାରଣେ ବନ୍ଧୁଃ କିଂ ବା ବିଶ୍ୱାସଘାତକଃ । ୧୧୦ ।

ଆଗନ୍ତୁକ ମିତ୍ର ହୁଏ କିମ୍ବା ଶତ୍ରୁ ହୁଏ, ପୁରାବୃତ୍ତ କଥାରେ ତା ନ ହୁଏ ନିର୍ଣ୍ଣୟ । ୧୧୦ ।

ଯାତୁ ଯାତୁ । ପ୍ରସ୍ତୁତମନୁସନ୍ଧୀୟତାଂ । ମଳୟାଧିତ୍ୟକାୟାଂ ସମାବାସତୋ ବର୍ତ୍ତତେ ଚିତ୍ରବର୍ଣ୍ଣୋ ନାମ ରାଜା । ତଦଧୁନା କିଂ ବିଧେୟଂ ? ମନ୍ତ୍ରୀ ବଦତି—ଦେବ ! ଆଗତପ୍ରଣିଧିମୁଖାତ୍ ଶ୍ରୁତଂ ଯନ୍ମହାମନ୍ତ୍ରିଣୋ ଗୃଧ୍ରସ୍ୟୋପଦେଶେ ଚିତ୍ରବର୍ଣ୍ଣେନ ଅନାଦରଃ କୃତଃ । ଅତୋଽସୌ ମୂଢ଼ୋ ଜେତୁଂ ଶକ୍ୟଃ । ତଥାଚୋକ୍ତଂ ।

ଯାଉ, ଏ କଥା ଛାଡ଼ିଦିଅ । ଏହିକ୍ଷଣି ଉପସ୍ଥିତ ବିଷୟର କର୍ତ୍ତବ୍ୟ ସ୍ଥିର କର । ରାଜା ଚିତ୍ରବର୍ଣ୍ଣ ମଳୟପର୍ବତର ଅଧିତ୍ୟକାରେ ସୈନ୍ୟ ସନ୍ନିବେଶପୂର୍ବକ ଅବସ୍ଥାନ କରିଅଛନ୍ତି । ଅତଏବ ବର୍ତ୍ତମାନ କର୍ତ୍ତବ୍ୟ କଣ ? ମନ୍ତ୍ରୀ କହିଲେ,—ମହାରାଜ ! ଆଗତ ଗୂଢ଼ଚରର ମୁଖରୁ ଶୁଣିଲି ଯେ, ସେହି ମନ୍ତ୍ରୀପ୍ରବର ଗୃଧ୍ରର ଉପଦେଶବାକ୍ୟରେ ଚିତ୍ରବର୍ଣ୍ଣ ଅନାଦର ପ୍ରଦର୍ଶନ କରିଅଛି । ଅତଏବ ଏହି ମୂର୍ଖ ରାଜାକୁ ଜୟ କରିବା କଠିନ ହେବ ନାହିଁ । କଥିତ ଅଛି ଯେ,—

GPNanda Colln., Digitized by srujanika@gmail.com

ଲୁବ୍ଧଃ କ୍ରୂରୋଽଲସୋଽସତ୍ୟଃ ପ୍ରମାଦୀ ଭୀରୁରସ୍ଥିରଃ ।
ମୂଢୋ ଯୋଧାବମନ୍ତା ଚ ସୁଖଚ୍ଛେଦ୍ୟୋ ରିପୁଃ ସ୍ମୃତଃ ।୧୧୧।

ଲୁବ୍ଧ, କ୍ରୂର, ଅଳସ, ଅସତ୍ୟ ପରାୟଣ, ଅସ୍ଥିର ପ୍ରମତ୍ତ ଭୀରୁ ଅବୋଧ ଯେ ଜନ । ଅପଣା ସୈନ୍ୟର ପ୍ରତି ଉପେକ୍ଷା ଯାହାର, ସେପରି ଶତ୍ରୁର ହୁଏ ସହଜେ ସଂହାର । ୧୧୦ ।

ତଦସୌ ଯାବଦ୍ଦୁର୍ଗାବରୋଧଂ ନ କରୋତି ତାବନ୍ନଦ୍ୟଦ୍ରିବନବର୍ତ୍ମସୁ ତଦ୍ବଲାନି ହନ୍ତୁଂ ସାରସାଦୟୋ ନିୟୁଜ୍ୟନ୍ତାଂ ସେନାପତୟଃ । ତଥା ଚୋକ୍ତଂ ।

ଅତଏବ ଏହି ଚକ୍ରବର୍ତ୍ତୀ ଆସି ଆମ୍ଭମାନଙ୍କର ଦୁର୍ଗ ଅବରୋଧ ନ କରୁଣୁ ତାହାର ସୈନ୍ୟଗଣଙ୍କୁ ବିନଷ୍ଟ କରିବାପାଇଁ ଆମ୍ଭମାନଙ୍କର ସେନାପତି ସାରସପ୍ରଭୃତିଙ୍କୁ ଗିରି ନଦୀ ଓ ଅରଣ୍ୟ ପଥରେ ପ୍ରେରଣ କରନ୍ତୁ । କଥିତ ଅଛି ଯେ,—

ଦୀର୍ଘବର୍ତ୍ମ ପରିଶ୍ରାନ୍ତଂ ନଦ୍ୟଦ୍ରି ବନସଙ୍କୁଳଂ ।
ଘୋରାଗ୍ନି ଭୟସନ୍ତ୍ରସ୍ତଂ କ୍ଷୁତ୍ପିପାସାହତ କ୍ଲମଂ । ୧୧୨ ।
ପ୍ରମତ୍ତଂ ଭୋଜନବ୍ୟଗ୍ରଂ ବ୍ୟାଧିଦୁର୍ଭିକ୍ଷପୀଡ଼ିତଂ ।
ଅସଂସ୍ଥିତମଭୂୟିଷ୍ଠଂ ବୃଷ୍ଟିବାତସମାକୁଳଂ । ୧୧୩ ।
ପଙ୍କପାଂଶୁଜଳାଚ୍ଛନ୍ନଂ ସୁବ୍ୟସ୍ତଂ ଦସ୍ୟୁବିଦ୍ରୁତଂ ।
ଏବମ୍ଭୂତଂ ମହୀପାଳଃ ପରସୈନ୍ୟଂ ବିଘାତୟେତ୍ । ୧୧୪ ।

ଗିରିନଦୀ, ବନଅଟ ଦୁର୍ଗମ ପଥେ, ଦୀର୍ଘପଥ ପର୍ଯ୍ୟଟନେ ଅତି ପରିପୀଡ଼ିତ । ଭୀଷଣ ଅଗ୍ନିର ଭୟେ ଶଙ୍କିତ ନିତାନ୍ତ, କ୍ଷୁଧା ତୃଷା ପରବଶେ ଅତି ମାତ୍ର କ୍ଳାନ୍ତ । ପ୍ରମତ୍ତ ଭୋଜନବ୍ୟଗ୍ର ରୁଗ୍ଣ ଭଗ୍ନବଳ, ଦୁର୍ଭିକ୍ଷ ପୀଡ଼ିତ ଅତି ସଂଖ୍ୟାରେ ବିରଳ । ପଙ୍କ ଧୂଳି ଜଳେ ସମାଚ୍ଛନ୍ନ ନିରନ୍ତରେ, ବର୍ଷା, ବାତ୍ୟାଦ୍ୱାରା ଅକୁଳିତ ଅନ୍ତରେ । ପ୍ରବଳ ଦସ୍ୟୁର ଭୟେ ଅତି ଅବ୍ୟାକୁଳିତ, ଉପର୍ଯ୍ୟୁପରିଭାବେ ଗୃହଦ୍ୱାରେ ପଳାୟିତ । ଶତ୍ରୁସୈନ୍ୟ ଏ ଦୁର୍ଦ୍ଦଶା ଦେଖିବ ଯେବେଳେ, ଅବାଧେ ନୃପତି ତାକୁ ନାଶିବ ସେବେଳେ । ୧୧୨ । ୧୧୩ । ୧୧୪ ।

GPNanda Colln., Digitized by srujanika@gmail.com

ଅନ୍ୟଚ । ଜନସ୍ଥଙ୍କ ଭସ୍ମାଦ୍ରାଜା ଦୁଜ୍ଞାଗରକୃତ ଶ୍ରମଂ ।

ଧବାଯୁଷ୍ୟଂ ସଦା ହନ୍ୟାନ୍ନିଦ୍ରାବ୍ୟାକୁଳସୈନ୍ନକଂ । ୧୧୪ ।

ଅନ୍ୱୟ—ଅଧମଣ ଭସ୍ମେ ବର୍ଜି କର ଜାଗରଣ, ଧବା ଭ୍ରଗେ ଶ୍ରମଭରେ ନିଦ୍ରିତ ବହୁଣ । ତେବେହିଁ ସେ ଋପୁ ସୈନ୍ୟ କର ଅଧମଣ, ନୃପତେ ଉଚ୍ଛେଦ ତାର କରିବ ସାଧନ । ୧୧୪ ।

ଅତସ୍ତସ୍ୟ ପ୍ରମାଦନେ। ବଳଂ ଗତ୍ୱା ଯଥାବକାଶଂ ବଧାନଶଂ କଦ୍ଦନ୍ତ୍ୱିତି ସେନାପତ୍ୟଃ । ତଥାଽନୁଷ୍ଠିତେ ସୈନକାଶ୍ଚିତ୍ରବର୍ଣ୍ଣସ୍ୟ ବହବଃ ସେନାପତୟଶ୍ଚ ନିହତାଃ । ତତ ଶ୍ଚିତ୍ରବର୍ଣ୍ଣୋ ବଷଣ୍ଣଃ ସ୍ୱମନ୍ତ୍ରିଣଂ ଦୂରଦର୍ଶିନମାହ—ତାତ । କିମିତ ସ୍ମଦୁପେକ୍ଷା କ୍ରିୟତେ ? କିଂ ବା କ୍ୱାପ୍ୟସ୍ମ କମବନଯ୍ୟୋଽସ୍ତି । ତଥାଚୋକ୍ତଂ ।

ଅତଏବ ସାରସ ପ୍ରଭୃତ ସେନାପତମାନେ ଯାଇ ସେହି ପର୍ବ୍ବ ରାଜାର ସୈନ୍ୟଗଣଙ୍କୁ ସୁଯୋଗ କ୍ରମେ ଦିବା ସର୍ବେ ବନଷ୍ଟ କରନ୍ତୁ । ଅନନ୍ତର ସେହି ମନ୍ତ୍ରଣାନୁରୂପ କାର୍ଯ୍ୟଅନୁଷ୍ଠିତ ହେଲା ପରେ ଚିତ୍ରବର୍ଣ୍ଣର ସୈନ୍ୟ ଓ ସେନାପତ ହତ ହେଲେ । ତହିଁରେ ଚିତ୍ରବର୍ଣ୍ଣ ଅତ୍ୟନ୍ତ ଷେଣ୍ଣ ହୋଇ ଦୂରଦର୍ଶୀନାମକ ଗୃଧ୍ରମନ୍ତ୍ରୀଙ୍କୁ କହିଲା,—ପିତଃ ! ଅ.ଣ ଭପାଇ ଅମ୍ଭଠାରେ ଉପେକ୍ଷା ପ୍ରଦର୍ଶନ କରୁଅଛନ୍ତି ? ଅମ୍ଭ.ଷରେ କୌଣସି ବିଷୟରେ କୌଣସି ଅବନୟକାର୍ଯ୍ୟ ହୋଇଅଛି କି ? କଥିତ ଅଛି ଯେ,—

ନ ରାଜ୍ୟଂ ପ୍ରାପ୍ତମିତ୍ୟେବ ବର୍ତ୍ତିତବ୍ୟମସାମ୍ପ୍ରତଂ ।

ଶ୍ରିୟଂ ହ୍ୟବନୟୋ ହନ୍ତି ଜରା ରୂପମିବୋତ୍ତମଂ । ୧୧୫ ।

ରାଜ୍ୟ ପାଇଅଛି ବୋଲି ଅଛି କବା ଭୟ, ଏହା ଭାବ କେବେ ନ କରିବ ଅବନୟ । ଜରାରେ ଦେହର କାନ୍ତି ବନାଶ ଯେପରି, ଅବନୟେ ରାଜଲକ୍ଷ୍ମୀ ବନାଶ ସେପରି । ୧୧୫ ।

ଅପିଚ—ଦକ୍ଷଃ ଶ୍ରିୟମଧିଗଚ୍ଛତି ପଥ୍ୟାଶୀ କଲ୍ୟତାଂ ସୁଖମରୋଗୀ ।

ଉଦ୍ୟୋଗୀ ବଦ୍ୟାନ୍ତଂ ଧର୍ମାର୍ଥଯଶାଂସି ଚ ବନୀତଃ । ୧୧୬ ।

ଅନ୍ୱୟ—ଲଭଇ ସୌଭାଗ୍ୟଲକ୍ଷ୍ମୀ ସୁଦକ୍ଷ ଯେ ହୁଏ, ପଥ୍ୟ ସେବୀ

GPNanda Colln., Digitized by srujanika@gmail.com

ସୁସ୍ଥ ହେବେ, ସୁସ୍ଥ ସୁଖେ ରହିବେ । ଉଦ୍ୟୋଗୀ ବିଦ୍ୟାର ପାର କରେ ଦର-ଶନ, ଧର୍ମ ଅର୍ଥ ଯଶ ଲଭେ ଉନସ୍ବୀ ଯେ ଜନ । ୧୧୬ ।

ଗୃଧ୍ରୋବଦତ୍—ଦେବ ! ଶ୍ରୂୟତାଂ ।

ଅବଦ୍ଧାନପି ଭୂପାଲୋ ବିଦ୍ୟାବୃଦ୍ଧୋପସେବୟା ।
ବର୍ଦ୍ଧତେ ସ୍ଥିରମକାଷ୍ଠୋଳ ଜଳାସନ୍ନତରୁର୍ଯଥା । ୧୧୭ ।

ଗୃଧ୍ର କହିଲ,—ମହାରାଜ ! ଶୁଣନ୍ତୁ—ବିଦ୍ୟାଜ୍ଞାନ ଯେ ନୃପତି ଲଭେ ମହୋନ୍ନତି, ଯଦି ସୁବିଦ୍ୱାନ କେହୁ ରହେ ବୃଦ୍ଧ ଜନ । ଯାହା ନିକଟରେ ସୁପ୍ରଶସ୍ତ ଜଳାଶୟ, ସେ ବୃକ୍ଷ ନିଶ୍ଚୟ ପାଏ ବୃଦ୍ଧି ଅତିଶୟ । ୧୧୭ ।

ଅନ୍ୟଚ୍ଚ । ପାନଂ ସ୍ତ୍ରୀ ମୃଗୟା ଦ୍ୟୂତମର୍ଥଦୂଷଣମେବ ଚ ।
ବାଗ୍‌ଦଣ୍ଡୟୋଶ୍ଚ ପାରୁଷ୍ୟଂ ବ୍ୟସନାନି ମହୀଭୁଜାଂ । ୧୧୮ ।

ଅଉମଧ—ରମଣୀ ବାରୁଣୀପାନ ମୃଗୟା ଭ୍ରମଣ, ଦ୍ୟୂତକ୍ରୀଡ଼ା ରବା ନିଦ୍ରା, ଅର୍ଥର ଦୂଷଣ । ନିଦାରୁଣ ଦଣ୍ଡ ଅଉ କଠୋର ବଚନ, ଏ ସକଳ ନୃପତିର ଜାଣିବ ବ୍ୟସନ । ୧୧୮ ।

କିଂଚ—ନ ସାହସୈକାନ୍ତରସାନୁବର୍ତ୍ତିନା ନ ଚାପ୍ୟୁପାୟୋପହତାନ୍ତରାତ୍ମନା ।
ବିଭୂତୟଃ ଶକ୍ୟମବାପ୍ତୁମୂର୍ଜିତା ନୟେ ଚ ଶୌର୍ଯ୍ୟେ ଚ ବସନ୍ତି ସମ୍ପଦଃ । ୧୧୯ ।

ଅଉମଧ—ସାହସ ଯେ ପ୍ରକାଶଇ ନ ରେ ବିଚାର, ସୁନୀତି ଉଦ୍ଭାବନରେ ବୃଦ୍ଧି ନାହିଁ ଯାର । ଅମୂଲ୍ୟ ସମ୍ପଦ ଲାଭ ତାର ସାଧ୍ୟ ନୁହେ, ନୀତି ଅଉ ବୀରତ୍ୱରେ ଲକ୍ଷ୍ମୀଙ୍କ ଆଶ୍ରୟେ । ୧୧୯ ।

ତ୍ୱୟା ସ୍ୱବଲୋତ୍ସାହମବଲୋକ୍ୟ ସାହସୈକରସିକେନ ମୟୋ-ପନ୍ୟସ୍ତେଷ୍ୱପି ମନ୍ତ୍ରେଷୁ ଅନବଧାନଂ ବାକ୍‌ପାରୁଷ୍ୟଂ ଚ କୃତଂ । ଅତୋ ଦୁର୍ନୀତେଃ ଫଳମିଦମନୁଭୂୟତେ । ତଥାଚୋକ୍ତଂ ।

ଆପଣ ନିଜ ସୈନ୍ୟର ଯୁଦ୍ଧୋତ୍ସାହ ଦେଖିକରି ଏହି ନିତାନ୍ତ ଦୁଃସାହସର କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛନ୍ତି, ମୁଁ ବାରମ୍ବାର ସୁମନ୍ତ୍ରଣା ଦେଲେମଧ୍ୟ ତାହା କଟୂବାକ୍ୟରେ ପ୍ରତ୍ୟାଖ୍ୟାନ କରୁଅଛନ୍ତି, ସେହି ଦୁର୍ନୀତି ଫଳରୁ ଏହି କଷ୍ଟରେ ପତିତ ହୋଇଅଛନ୍ତି । ଶାସ୍ତ୍ରରେ କଥିତ ଅଛି ଯେ,—

GPNanda Colln., Digitized by srujanika@gmail.com

ଦୁର୍ମନ୍ତ୍ରିଣଂ କମୁପଯାନ୍ତି ନ ନୀତିଦୋଷାଃ ?
ସନ୍ତାପୟନ୍ତି କମପଥ୍ୟଭୁଜଂ ନ ରୋଗାଃ ?
କଂ ଶ୍ରୀର୍ନ ଦର୍ପୟତି ? କଂ ନ ନିହନ୍ତି ମୃତ୍ୟୁଃ ?
କଂ ସ୍ତ୍ରୀକୃତା ନ ବିଷୟାଃ ପରିତାପୟନ୍ତି । ୧୨୦ ।

କୁମନ୍ତ୍ରିର କୁମନ୍ତ୍ରଣା କରଣ ଶ୍ରବଣ, ଦୁର୍ନୀତି ଦୋଷର ଭାଜନ ନ ହୁଏ ଭଜନ ?, ସର୍ବଦା କୁପଥ୍ୟ ଯେହୁ କରଣ ସେବନ, ରୋଗର ଯାତନା କେହୁ ନ ଭୋଗଇ ଜନ ? ଧନ ମଦେ ମତ୍ତ ହୁଏନାହିଁ କାହା ମନ, ଦୁରନ୍ତ ଯମ କାହାକୁ ନ କରେ ହରଣ ? ରମଣୀର ପ୍ରଲୋଭନେ ହୋଇଣ ପତିତ, କେବା ନ ହୁଅଇ ପରିଶେଷେ ସନ୍ତାପିତ । ୧୨୦ ।

ଅପରଞ୍ଚ !

ମୁଦଂ ବିଷାଦଃ ଶରଦଂ ହିମାଗମଃ
ତମୋ ବିବସ୍ୱାନ୍ ସୁକୃତଂ କୃତଘ୍ନତା ।
ପ୍ରିୟୋପପତ୍ତିଃ ଶୁଚମାପଦଂ ନୟଃ
ଶ୍ରିୟଂ ସମୃଦ୍ଧାମପି ହନ୍ତି ଦୁର୍ନୟଃ । ୧୨୧ ।

ବିଷାଦ ମନର ହର୍ଷ ସମସ୍ତଙ୍କୁ ହରେ, ଶୀତଋତୁ ଶରତର ଶୋଭା ନାଶ କରେ, ଦିବାକର ଅନ୍ଧକାର କରେ ନିରାକୃତ, କୃତଘ୍ନତା ନାଶ କରେ ଯେତେକ ସୁକୃତ, ବାଞ୍ଛିତ ବିଷୟ ଲାଭେ ଦୁଃଖ ଦୂର ହୁଏ, ସୁନୀତି ହରଣ କରେ ବିପଦର ଭୟେ । ଥିଲେ ମଧ ପୂର୍ବପ୍ରାୟ ଅତୁଳ ବିଭବୁଁ, ଅପଣା ଦୁର୍ନୀତି ଯୋଗୁଁ ନାଶ ହୁଏ ସବୁ । ୧୨୧ ।

ତତୋ ମୟାପ୍ୟାଲୋଚିତଂ—ପ୍ରଜ୍ଞାହୀନୋଽୟଂ ରାଜା । ନୋଚେତ୍ କଥଂ ନୀତିଶାସ୍ତ୍ରକଥାକୌମୁଦୀଂ ବାଗୁଲ୍କାଭିସ୍ତିମିରୟତି ? ଯତଃ ।

ଅତଏବ ମୋ ବାକ୍ୟରେ ଉପେକ୍ଷା କରିବାରୁ ମୁଁ ଭାବିଲି,—ଅତଏବ ଅତି ନିର୍ବୋଧ, ନତୁବା ମୋହର ନୀତିଶାସ୍ତ୍ର ବିଷୟକ ସୁମନ୍ତ୍ରଣାରୂପ ଚନ୍ଦ୍ରକାନ୍ତିକି ଏ ଦୁର୍ବାକ୍ୟରୂପ ଉଲ୍କାରାଶିଦ୍ୱାରା ଆଚ୍ଛନ୍ନ କରନ୍ତେ କାହିଁକି ? କଥିତ ଅଛି ଯେ,—

ଯସ୍ୟ ନାସ୍ତି ସ୍ୱୟଂ ପ୍ରଜ୍ଞା ଶାସ୍ତ୍ରଂ ତସ୍ୟ କରୋତି କିଂ ?
ଲୋଚନାଭ୍ୟାଂ ବିହୀନସ୍ୟ ଦର୍ପଣଃ କିଂ କରିଷ୍ୟତି । ୧୨୨ ।

GPNanda Colln., Digitized by srujanika@gmail.com

ଯାହାର ନିଜ ଦେହରେ ବୁଦ୍ଧିଟି ନ ରହେ, ଶାସ୍ତ୍ର ଉପଦେଶେ ତାର କିବା ଫଳୋଦୟେ ? ଦୁଇଟି ନୟନରୁ ହୁଏ ବଞ୍ଚିତ ଯେ ଜନ, କି ଫଳ ତାହାର ପାଶେ ଥଇଲେ ଦର୍ପଣ । ୧୨୨ ।

ତେନାହମପି ତୂଷ୍ଣୀଂ ସ୍ଥିତଃ । ଅଥ ରାଜା ବଦ୍ଧାଞ୍ଜଳିରାହ—ତାତ ! ଅସ୍ତ୍ୟୟଂ ମମାପରାଧଃ । ଇଦାନୀଂ ଯଥାଽହଂ ଅବଶିଷ୍ଟବଳସହିତଃ ପ୍ରତ୍ୟାବୃତ୍ୟ ବିନ୍ଧ୍ୟାଚଳଂ ଗଚ୍ଛାମି ତଥୋପଦିଶ । ଗୃଧ୍ରଃ ସ୍ୱଗତଂ ଚିନ୍ତୟତି—କର୍ତ୍ତବ୍ୟୋଽତ୍ର ପ୍ରତୀକାରଃ । ଯତଃ ।

ସେହି କାରଣରୁ ମୁଁ ମଧ୍ୟ ଉଦାସୀନ ଅଛି । ଅନନ୍ତର ରାଜା କୃତାଞ୍ଜଳି-ପୁଟେ କହିଲେ,—ପିତଃ ! ସତ୍ୟ, ମୁଁ ଏ ଗୁରୁତର ଅପରାଧ କରିଅଛି । ବର୍ତ୍ତମାନ ହତାବଶିଷ୍ଟ ସୈନ୍ୟ ସାମନ୍ତ ନେଇ ଯହିଁରେ ମୁଁ ବିନ୍ଧ୍ୟାଚଳକୁ ଫେରି ଯାଇ ପାରେ ତାହାର ଉପାୟ କରନ୍ତୁ । ଗୃଧ୍ର ମନେ୨ ଭାବିବାକୁ ଲାଗିଲା,—ବର୍ତ୍ତମାନ ପ୍ରତୀକାରର ଉପାୟ ଅବଶ୍ୟ କରିବାକୁ ହେବ । କାରଣ,—

ଦେବତାସୁ ଗୁରୌ ଗୋଷୁ ରାଜସୁ ବ୍ରାହ୍ମଣେଷୁ ଚ ।
ନିୟନ୍ତବ୍ୟଃ ସଦା କୋପୋ ବାଳବୃଦ୍ଧାତୁରେଷୁ ଚ । ୧୨୩ ।

ଗୋଜାତି, ଦେବତା ଗୁରୁ ନୃପତି ବ୍ରାହ୍ମଣ, ବାଳକ ଆତୁର ଅତି ବୃଦ୍ଧ ଯେତେ ଜନ । ଏମାନଙ୍କ ପ୍ରତି କ୍ରୋଧ ହେଲେହିଁ ଉଦୟ, ଯତନେ ଦମନ ତାହା କରିବ ନିଶ୍ଚୟ । ୧୨୩ ।

ବ୍ରୂତେ ଚ ସହାସ୍ୟ—ଦେବ ! ମା ଭୈଷୀଃ, ସମାଶ୍ୱସିହି । ଶୃଣୁ ଦେବ—

ଅନନ୍ତର ଗୃଧ୍ର ସହାସ୍ୟ ବଦନରେ କହିଲା,—ମହାରାଜ ! ଭୟ ପାଇବେ ନାହିଁ, ଧୈର୍ଯ୍ୟ ଧାରଣ କରନ୍ତୁ । ଶ୍ରବଣ କରନ୍ତୁ ମହାରାଜ ।—

ମନ୍ତ୍ରିଣାଂ ଭିନ୍ନସନ୍ଧାନେ ଭିଷଜାଂ ସାନ୍ନିପାତିକେ ।
କର୍ମଣି ବ୍ୟଜ୍ୟତେ ପ୍ରଜ୍ଞା ସୁସ୍ଥେ କୋ ବା ନ ପଣ୍ଡିତଃ ।୧୨୪ ।

ବୁଝିବ ମନ୍ତ୍ରୀର ବୁଦ୍ଧି ସଂକଟ ସମୟେ, ସନ୍ନିପାତ ବିକାରେ ବୈଦ୍ୟର ପରିଚୟେ । ଏରୂପେ ବୁଝିବ ବୁଦ୍ଧି କାର୍ଯ୍ୟର ସମୟେ, ନହୁବା ଶାନ୍ତିକାଳରେ କେହୁ ଅଜ୍ଞ ନୁହେ । ୧୨୪ ।

GPNanda Colln., Digitized by srujanika@gmail.com

ଅପରଂଚ । ଆରମ୍ଭେଽଲ୍ପେନୈବାଜ୍ଞାଃ କାମଂ ବ୍ୟଗ୍ରା ଭବନ୍ତି ଚ ।
ମହାରମ୍ଭାଃ କୃତଧିୟସ୍ତିଷ୍ଠନ୍ତି ଚ ନିରାକୁଳାଃ । ୧୨୫ ।

ଅଜ୍ଞ ମଧ୍ୟ—ଅଳ୍ପକାର୍ଯ୍ୟ ଆରମ୍ଭ କରଣ ଅଜ୍ଞଜନ, ଅତି ମାତ୍ର ବ୍ୟତିବ୍ୟସ୍ତ ହୁଏ ସେ କାରଣ, ବଡ଼ କାର୍ଯ୍ୟ ଆରମ୍ଭ କରଣ ବିଜ୍ଞଜନ, ସ୍ଥିର ଧୀରଭାବେ ତାହା କରେ ସମାପନ । ୧୨୫ ।

ଦେବ ! ତତୋ ଭବତ୍ପ୍ରତାପାଦେବ ଦୁର୍ଗଂ ଭଙ୍କ୍ତ୍ୱା କୀର୍ତ୍ତିପ୍ରତାପସହିତଂ ତ୍ୱାମଚିରେଣୈବ କାଳେନ ବିନ୍ଧ୍ୟାଚଳଂ ନେଷ୍ୟାମି । ରାଜାହ—କଥମଧୁନା ସ୍ୱଳ୍ପବଳେନ ତତ୍ସମ୍ପଦ୍ୟତେ । ଗୃଧ୍ରୋ ବଦତି—ଦେବ ! ତତ୍ସର୍ବଂ ଭବିଷ୍ୟତି । ଯତଃ ଅଦୀର୍ଘସୂତ୍ରତା ବିଜୟସ୍ୟ ଧ୍ରୁବଂ ଲକ୍ଷଣଂ । ତଦଦ୍ୟ ସହସୈବ ଦୁର୍ଗଦ୍ୱାରାବରୋଧଃ କ୍ରିୟତାଂ । ଅଥ ପ୍ରଣିଧିନା ବକେନାଗତ୍ୟ ହିରଣ୍ୟଗର୍ଭସ୍ୟ କଥିତଂ—ଦେବ ! ସ୍ୱଳ୍ପବଳ ଏବାୟଂ ରାଜା ଚିତ୍ରବର୍ଣ୍ଣୋ ଗୃଧ୍ରସ୍ୟ ବଚନୋପଷ୍ଟମ୍ଭାଦାଗତ୍ୟ ଦୁର୍ଗଦ୍ୱାରାବରୋଧଂ କରିଷ୍ୟତି । ରାଜହଂସୋ ବ୍ରୂତେ—ସର୍ବଜ୍ଞ ! କିମଧୁନା ବିଧେୟଂ । ଚକ୍ରବାକୋ ବ୍ରୂତେ—ସ୍ୱବଳେ ସାରାସାରବିଚାରଃ କ୍ରିୟତାଂ । ଜ୍ଞାତ୍ୱା ସୁବର୍ଣ୍ଣବସ୍ତ୍ରାଦି ଯଥାର୍ହଂ ପ୍ରସାଦଦାନଂ ଚ କ୍ରିୟତାଂ । ତଥା ଚୋକ୍ତଂ—

ମହାରାଜ ! ଆପଣଙ୍କ ପ୍ରତାପରୁ ଦୁର୍ଗକୁ ଭଙ୍ଗ କରି କୀର୍ତ୍ତି ବଳ ସହିତ ଆପଣଙ୍କୁ ବିନ୍ଧ୍ୟାଚଳକୁ ନେଇଯିବି । ରାଜା କହିଲେ, ବର୍ତ୍ତମାନ ଅଳ୍ପ ବଳରେ କିପରି ତାହା ସମ୍ପନ୍ନ ହେବ । ଗୃଧ୍ର କହିଲା ମହାରାଜ ! ସବୁ ହେବ । କାରଣ ଜୟାଭିଳାଷୀମାନଙ୍କର ଶୀଘ୍ରତା ବିଜୟସିଦ୍ଧିର ଲକ୍ଷଣ । ଅତଏବ ଆଜ ଦୁର୍ଗଦ୍ୱାର ଅବରୋଧ କରାଯାଉ । ପ୍ରଣିଧି ବକ ଆସି ହିରଣ୍ୟଗର୍ଭଙ୍କୁ କହିଲା । ଦେବ ! ଅଳ୍ପବଳବିଶିଷ୍ଟ ଚିତ୍ରବର୍ଣ୍ଣ ରାଜା ଗୃଧ୍ର ମନ୍ତ୍ରୀ କଥାରେ ଦୁର୍ଗଦ୍ୱାର ଅବରୋଧ କରୁଅଛି । ରାଜହଂସ କହିଲା—ହେ ସର୍ବଜ୍ଞ, ବର୍ତ୍ତମାନ କଣ କରିବା କର୍ତ୍ତବ୍ୟ । ଚକ୍ରବାକ କହିଲା, ନିଜ ସୈନ୍ୟ ମଧ୍ୟରେ ବିଚାର କର । ବୁଝି ସୁଝି ଯଥାଯୋଗ୍ୟ ସୁବର୍ଣ୍ଣ ବସ୍ତ୍ରାଦି ରାଜପ୍ରସାଦ ଦାନ କର । କଥିତ ଅଛି ଯେ—

ଯଃ କାକିନୀମପ୍ୟପଥପ୍ରପନ୍ନାଂ ସମୁଦ୍ଧରେନ୍ନିଷ୍କସହସ୍ରତୁଲ୍ୟାଂ ।
କାଳେ ଚ କୋଟିଷ୍ୱପି ମୁକ୍ତହସ୍ତଃ ତଂ ରାଜସିଂହଂ ନ ଜହାତି ଲକ୍ଷ୍ମୀଃ ॥

GPNanda Colln., Digitized by srujanika@gmail.com

ଏକ କଡ଼ା କୌପର୍ଦ୍ଦିକ ଅକାର୍ଯ୍ୟରେ ଯାଏ, କୋଟି ସ୍ୱର୍ଣ୍ଣ ଜ୍ଞାନ କର ଯେ ତାହା ବଞ୍ଚାଏ । କିନ୍ତୁ କୋଟି କୋଟି ସ୍ୱର୍ଣ୍ଣ କାର୍ଯ୍ୟରେ ବ୍ୟୟ କଲେ, ଅଣୁ ମାତ୍ର ମମତା ନ ହୁଏ ଚିତ୍ତେ ଭୁଲେ । ସେହିତ ନୃପତିସିଂହ ଜାଣିବ କଷ୍ଟସ୍ୱେ, କମଳା ଅଚଳା ହୋଇ ତାର ପାଶେ ରହେ । ୧୬୬ ।

ଅନ୍ୟଚ୍ଚ—କ୍ରତୌ ବିବାହେ ବ୍ୟସନେ ରିପୁକ୍ଷୟେ
ଯଶସ୍କରେ କର୍ମଣି ମିତ୍ରସଂଗ୍ରହେ ।
ପ୍ରିୟାସୁ ନାରୀଷ୍ୱଧନେଷୁ ବାନ୍ଧବେ-
ଷ୍ୱତିବ୍ୟୟୋ ନାସ୍ତି ନରାଧିପାଷ୍ଟସୁ । ୧୬୭ ।

ଆଉ ମଧ୍ୟ—ଯଜ୍ଞୋତ୍ସବ; ମିତ୍ରଲାଭ, ଯଶ, ପରିଣୟ, ଦରିଦ୍ର ବନ୍ଧୁ-ରକ୍ଷିତ, ବିପକ୍ଷର କ୍ଷୟ । ବିପଦ ଉଦ୍ଧାର ଅତି ପ୍ରିୟାର ସନ୍ତୋଷ; ଏ ସବୁ ଅଧିକ ବ୍ୟୟରେ ନାହିଁ କିଛି ଦୋଷ । ୧୬୭ ।

ଯତଃ । ମୂର୍ଖଃ ସ୍ୱଳ୍ପବ୍ୟୟତ୍ରାସାତ୍ ସର୍ବନାଶଂ କରୋତି ହି ।
କଃ ସୁଧୀ ସଂତ୍ୟଜେଦ୍ ଭାଣ୍ଡଂ ଶୁଲ୍କସ୍ୟୈବାତିସାଧ୍ୱସାତ୍ । ୧୬୮ ।

କାରଣ;—ଅତ୍ୟଳ୍ପ ବ୍ୟୟ ଭୟରେ ମୂର୍ଖ ଯେଉଁ ଜନ, ଆପଣାର ସର୍ବନାଶ କରଇ ସାଧନ; କେହି ବୁଦ୍ଧିମାନ ଶୁଳ୍କ ଦେବାର ଶଙ୍କାରେ, ମୂଳଧନ ସହ ନିଜ ବାଣିଜ୍ୟକୁ ହାରେ । ୧୬୮ ।

ରାଜାହ—କଥମତ୍ର ସମୟେଽତିବ୍ୟୟୋ ଯୁଜ୍ୟତେ । ଉକ୍ତଂଚ—"ଆପଦର୍ଥେ ଧନଂ ରକ୍ଷେତ୍" ଇତି । ମନ୍ତ୍ରୀ ବ୍ରୂତେ—ଶ୍ରୀମତାଂ କଥମାପଦଃ । ରାଜାହ—"କଦାଚିତ୍ କୁପିତା ଲକ୍ଷ୍ମୀଃ" । ପୁନର୍ମନ୍ତ୍ରୀ ବ୍ରୂତେ—ଦେବ ! "ସଞ୍ଚିତାର୍ଥୋ ବିନଶ୍ୟତି" । ତଦେବ କାର୍ପଣ୍ୟଂ ପରିତ୍ୟଜ୍ୟ ଦାନମାନାଭ୍ୟାଂ ସ୍ୱସୁଭଟାଃ ପୁରସ୍କ୍ରିୟତାଂ । ତଥାଚୋକ୍ତଂ ।

ରାଜା କହିଲେ,—ଏ ସମୟରେ ଅତିରିକ୍ତ ଅର୍ଥ ବ୍ୟୟ କି ଉଚିତ ? । ଶାସ୍ତ୍ରରେ କଥିତ ଅଛି ଯେ,—ବିପଦ ପାଇଁ ଧନ ସଞ୍ଚୟ କରି ରଖିବ । ମନ୍ତ୍ରୀ କହିଲେ,—ଭବାଦୃଶ ରାଜେଶ୍ୱରର ବିପଦ କେବେ ମଧ୍ୟ ସମ୍ଭବ ନୁହେ । ରାଜା କହିଲେ,—ଲକ୍ଷ୍ମୀ ତ କେବେ ମଧ୍ୟ ପ୍ରତିକୂଳ ହୋଇ ପାରନ୍ତି । ମନ୍ତ୍ରୀ ପୁନଶ୍ଚ କହିଲେ,—ମହାରାଜ ! ଲକ୍ଷ୍ମୀ ପ୍ରତିକୂଳ ହେଲେ ସଞ୍ଚିତ ଧନ ମଧ୍ୟ

GPNanda Colln., Digitized by srujanika@gmail.com

ନଷ୍ଟ ହୁଏ । ଅତଏବ ମହାରାଜ ! କୃପଣତା ତ୍ୟାଗ କରି ଧନ ଓ ସମ୍ମାନ ପ୍ରଦାନପୂର୍ବକ ନିଜ ସୈନ୍ୟଗଣଙ୍କୁ ଉତ୍ସାହିତ କରନ୍ତୁ । କଥିତ ଅଛି ଯେ,—

ପରସ୍ପରଜ୍ଞାଃ ସଂହୃଷ୍ଟାସ୍ତ୍ୟକ୍ତପ୍ରାଣାଃ ସୁନିଶ୍ଚିତାଃ ।
କୁଲୀନାଃ ପୂଜିତାଃ ସମ୍ୟଗ୍ ବିଜୟନ୍ତେ ଦ୍ୱିଷାଂ ବଲଂ । ୧୬୯ ।

ଉଚ୍ଚବଂଶେ ଯାହାରନ୍ତି ଜନ୍ମଯୁକ୍ତ ହୁଏ, ଦାନେ ମାନେ ସମ୍ମାନିତ ସାନନ୍ଦ ହୃଦୟେ; ଅଭେଦ୍ୟ ଏକତାସୂତ୍ରେ ଯେହୁ ବନ୍ଧ ରହେ, ପ୍ରଭୁ କାର୍ଯ୍ୟେ ଦୃଢ଼ପଣେ ନାହିଁ ମୃତ୍ୟୁଭୟେ । ସେ ସବୁ ସୈନିକଗଣେ ଜାଣିବ ନିଶ୍ଚୟ, ସମସ୍ତ ବିପକ୍ଷ ଦକ୍ଷ କରେ ପରାଜୟ । ୧୬୯ ।

ଅପରଂଚ । ସୁଭଟାଃ ଶୀଲସମ୍ପନ୍ନାଃ ସଂହତାଃ କୃତନିଶ୍ଚୟାଃ ।
ଅପି ପଞ୍ଚଶତଂ ଶୂରା ମୃଦ୍ନନ୍ତି ରିପୁବାହିନୀଃ । ୧୭୦ ।

ଅର୍ଥ ମଧ୍ୟ—ସୁଶିକ୍ଷିତ ସଚ୍ଚରିତ୍ର କାର୍ଯ୍ୟେ ଦୃଢ଼ବ୍ରତ, ଏକତାବନ୍ଧନେ ଯେହୁ ମିଳିତ ସତନ । ଏରୂପ ସୁଯୋଦ୍ଧା ଯଦି ପାଞ୍ଚଶତ ରହେ, ସମସ୍ତ ବିପକ୍ଷ ସେନା କରେ ପରାଜୟେ । ୧୭୦ ।

କିଂଚ । ଶିଷ୍ଟୈରପ୍ୟବିଶେଷଜ୍ଞ ଉଗ୍ରଶ୍ଚ କୃତନାଶକଃ ।
ତ୍ୟଜ୍ୟତେ କିଂ ପୁନର୍ନାନ୍ୟୈର୍ଯଶ୍ଚାପ୍ୟାତ୍ମମ୍ଭରିର୍ନରଃ । ୧୭୧ ।

ଅର୍ଥ ମଧ୍ୟ—ଅସ୍ଥିର କୃତଘ୍ନ ନିଷ୍ଠୁର ଦୁରାଶୟେ, ହିତାହିତ ଜ୍ଞାନ ଶୂନ୍ୟ ଯେଉଁ ଜନ ହୁଏ । ପରମ ସାଧୁଟି ତାଙ୍କୁ କରେ ପରିହାର, ଅନ୍ୟେ ଯେ ତ୍ୟଜିବ ତାକୁ କି କହିବ ଆର ? । ୧୭୧ ।

ଯତଃ— ସତ୍ୟଂ ଶୌର୍ଯ୍ୟଂ ତଥା ତ୍ୟାଗୋ ନୃପସ୍ୟୈତେ ମହାଗୁଣାଃ ।
ଏତୈସ୍ତ୍ୟକ୍ତୋ ମହୀପାଳଃ ପ୍ରାପ୍ନୋତି ଖଳୁ ବାଚ୍ୟତାଂ । ୧୭୨ ।

କାରଣ;—ସତ୍ୟନିଷ୍ଠା ଶୂରତା ସୁପାତ୍ରେ ସଦା ଦାନ, ରାଜାର ଏ ତିନିଗୁଣ ଜାଣିବ ପ୍ରଧାନ । ଯେ ରାଜାର ଏହି ତିନି ଗୁଣଟି ନ ରହେ, ସେ ହୁଏ ସର୍ବତ୍ର ଅତି ଘୃଣିତ ନିଶ୍ଚୟେ । ୧୭୨ ।

ଅମାତ୍ୟାସ୍ତାବଦବଶ୍ୟମେବ ପୁରସ୍କର୍ତ୍ତବ୍ୟାଃ ତଥାଚୋକ୍ତଂ ।
ରାଜା ଅମାତ୍ୟଗଣଙ୍କୁ ଅବଶ୍ୟ ପୁରସ୍କାର ଦେବେ । କଥିତ ଅଛି ଯେ,—

GPNanda Colln., Digitized by srujanika@gmail.com

ଯୋ ଯେନ ପ୍ରତିବଦ୍ଧଃ ସ୍ୟାତ୍ ସହ ତେନୋଦୟୀ ବ୍ୟୟୀ ।
ସ୍ୱବିଶ୍ୱସ୍ତୋ ନିଯୋକ୍ତବ୍ୟଃ ପ୍ରାଣେଷୁ ଚ ଧନେଷୁ ଚ । ୧୩୩ ।

ସୌଭାଗ୍ୟେ ସୌଭାଗ୍ୟ ଯାର ବ୍ୟସନେ ବ୍ୟସନ, ଏରୂପ ସ୍ୱାର୍ଥ ସୂତ୍ରେ ବଦ୍ଧ ଯେଉଁ ଜନ । ନିଯୋଜିବ ସେହିରୂପ ସୁବିଶ୍ୱସ୍ତ ଜନେ, ପ୍ରାଣ ରକ୍ଷଣରେ ଅଉ ଧନର ରକ୍ଷଣେ । ୧୩୩ ।

ଯତଃ । ଧୂର୍ତ୍ତଃ ସ୍ତ୍ରୀ ବା ଶିଶୁର୍ଯସ୍ୟ ମନ୍ତ୍ରିଣଃ ସ୍ୟୁର୍ମହୀପତେଃ ।
ଅନୀତିପବନକ୍ଷିପ୍ତୋ କାର୍ଯ୍ୟାବ୍ଧୌ ସ ନିମଜ୍ଜତି । ୧୩୪ ।

ସ୍ତ୍ରୀଲୋକ ବାଳକ କମ୍ବା ଧୂର୍ତ୍ତ ମନ୍ତ୍ରୀ ଯାହାର, ସେ ରାଜାର ଦୁର୍ଗତିର ସୀମା ଅକୂପାର । ଦୁର୍ନୀତି ଷ.ତ୍ୟରେ ସେହୁ ହୋଇଣ ତାଡ଼ିତ, ଅକାର୍ଯ୍ୟ ସାଗରେ ଯାଇ ହୁଏ ନିମଜ୍ଜିତ । ୧୩୪ ।

ଶୃଣୁ ଦେବ—ହର୍ଷକ୍ରୋଧୌ ଯତୌ ଯସ୍ୟ କୋଷଃ ସ୍ୱଳ୍ପବ୍ୟୟେନ ଚ ।
ନିତ୍ୟଂ ଭୃତ୍ୟାନୁବେକ୍ଷା ଚ ତସ୍ୟ ସ୍ୟାଦ୍ ଧନଦା ଧରା । ୧୩୪ ।

ଶୁଣନ୍ତୁ ମହାରାଜ ! ଯେ ରାଜାର ହର୍ଷ କ୍ରୋଧ ସୁସଂଯତ ରହେ, ଶୁମାନ ଯାର କିଛି ନାହିଁ ଅପବ୍ୟୟେ । ଭୃତ୍ୟଗଣ ସଦା ଯାର ହୃଦପୁର ଠାଣ, ନିତ୍ୟ ତାକୁ ବସୁମତୀ ଧନ କରେ ଦାନ । ୧୩୫ ।

ଯେଷାଂ ରାଜ୍ଞା ସହ ସ୍ୟାତାମୁଚ୍ଚୟାପଚୟୌ ଧ୍ରୁବଂ ।
ଅମାତ୍ୟାନ୍ ନୀତିମାନ୍ ରାଜା ନାବମନ୍ୟେତ କର୍ହିଚିତ୍ । ୧୩୬ ।

ପ୍ରଭୁର ସମ୍ପଦେ ହୁଏ ଯାହାର ସମ୍ପଦ, ପ୍ରଭୁର ବିପଦେ ହୁଏ ଯାହାର ବିପଦ । କଦାଚିତ ସେ ସକଳ ଅମାତ୍ୟର ପ୍ରତି, ଅନାଦର ନ କରିବ ନୀତିଜ୍ଞ ନୃପତି । ୧୩୬ ।

ଯତଃ । ମହୀଭୁଜୋ ମଦାନ୍ଧସ୍ୟ ସଙ୍କଟେ କାର୍ଯ୍ୟସାଗରେ ।
ସ୍ଖଳତୋ ହି କରାଲମ୍ବଃ ସୁଶ୍ଲିଷ୍ଟୈରେବ ଯାସ୍ୟତେ । ୧୩୭

କାରଣ;—ଘୋରମଦେ ଅନ୍ଧ ହୁଏ ନୃପତି ଯେସନ, ଅକାର୍ଯ୍ୟ ସାଗରମଧ୍ୟେ ହୁଏ ନିମଗନ । ତେତେବେଳେ ରଖିବାକୁ କେହିଟି ନ ରହେ, ସୁବିଜ୍ଞ ମନ୍ତ୍ରୀଙ୍କ ଏକା ବଳଟି ଜାଣ ହେ । ୧୩୭ ।

ଅଥାଗତ୍ୟ ପ୍ରଣମ୍ୟ ମେଘବର୍ଣ୍ଣୋ ବ୍ରୂତେ— ଦେବ ! ଦୃଷ୍ଟିପ୍ରସାଦଂ

GPNanda Colln., Digitized by srujanika@gmail.com

ବ୍ରୂତେ । ଏଷ ଯୁଦ୍ଧାର୍ଥୀ ବଳଣୋ ଦୁର୍ଗଦ୍ୱାରେ ତିଷ୍ଠତି । ତଦେବଯାବଦେବ
ବହିର୍ନିଃସୃତ୍ୟ ସ୍ୱବିକ୍ରମଂ ଦର୍ଶୟାମି । ତେନ ଦେବ ପ୍ରସାଦସ୍ୟ ଅନୃଣ୍ୟମୁପ-
ଗଚ୍ଛାମି । ଚକ୍ରବାକୋ ବ୍ରୂତେ—ମୈବଂ ଯଦି ବହିର୍ନିଃସୃତ୍ୟ ଯୋଦ୍ଧବ୍ୟଂ
ତଦା ଦୁର୍ଗାଶ୍ରୟଣଂ ନିଷ୍ପ୍ରୟୋଜନଂ । ଅପରଂଚ ।

ଅନନ୍ତର ମେଘବର୍ଣ୍ଣ ଆସି ପ୍ରଣାମ ପୂର୍ବକ ରାଜାଙ୍କୁ କହିଲା,—
ମହାରାଜ ! କୃପାଦୃଷ୍ଟି ଦାନ କରନ୍ତୁ । ଯୁଦ୍ଧାର୍ଥୀ ଶତ୍ରୁ ଆସି ଦୁର୍ଗଦ୍ୱାରେ
ଅବସ୍ଥାନ କରୁଅଛନ୍ତି । ମହାରାଜ ! ଆଜ୍ଞା ପାଇଲେ ସେ ସ୍ଥା ବହିର୍ଗତ ହୋଇ
ନିଜ ପରାକ୍ରମ ପ୍ରଦର୍ଶନ କରିବ ଏବଂ ମହାରାଜାଙ୍କ ଅନୁଗ୍ରହଋଣରୁ ମୁକ୍ତି-
ଲାଭ କରିବ । ଚକ୍ରବାକ କହିଲେ;—ନା, ଏପରି କର ନାହିଁ । ଯଦି
ଦୁର୍ଗର ବାହାରରେ ଯୁଦ୍ଧ କର୍ତ୍ତବ୍ୟ, ତେବେ ଦୁର୍ଗ ଆଶ୍ରୟ କରିବାର
ପ୍ରୟୋଜନ କଣ ? ଅଭିମଧ୍ୟ ଦେଖ !—

ବିଷମୋଽପି ଯଥା ନକ୍ରଃ ସଲିଲାନ୍ନିଃସୃତୋଽବଶଃ ।
ବନାଦ୍ଵିନିର୍ଗତଃ ଶୂରଃ ସିଂହୋଽପି ସ୍ୟାଚ୍ଛୃଗାଲବତ୍ । ୧୩୮ ।

ଭୀଷଣ କୁମ୍ଭୀର ସେହୁ ଥିଲେ ଯଦି ଜଳ, ନ ଖଟଇ ଅନ୍ୟ ତାର
ଅପାର ବଳ । ସିଂହମଧ୍ୟ ଥିଲେ ଯଦି ନିଜ ବନସ୍ଥଳ, ସାମାନ୍ୟ
ଶୃଗାଳତୁଲ୍ୟ ହୁଏ ହୀନବଳ । ୧ । ୮ ।

ବାୟସୋ ବ୍ରୂତେ—ଦେବ ! ସ୍ୱୟଂ ଗତ୍ୱା ଦୃଶ୍ୟତାଂ ଯୁଦ୍ଧଂ ।
ବାୟସ କହିଲା ମହାରାଜ ! ସ୍ୱୟଂ ଯାଇ ଯୁଦ୍ଧ ଦର୍ଶନ କରନ୍ତୁ । କାରଣ;—
ଯତଃ । ପୁରସ୍କୃତ୍ୟ ବଳଂ ରାଜା ଯୋଧୟେଦବଲୋକୟନ୍ ।
ସ୍ୱାମିନାଽଧିଷ୍ଠିତଃ ଶ୍ୱାଽପି କିଂ ନ ସିଂହାୟତେ ଧ୍ରୁବଂ । ୧୩୯ ।

କାରଣ—ସମ୍ମୁଖେ କରିବେ ରଣ ନିଜ ସୈନ୍ୟଗଣ, ସ୍ୱନେତ୍ରେ
ନୃପତି ତାହା କରିବେ ଦର୍ଶନ । ପ୍ରଭୁର ସମ୍ମୁଖେ ଯଦି କୁକ୍କୁର ଲଢ଼ଇ,
ସିଂହର ବିକ୍ରମ ସେହୁ ପ୍ରକାଶେ ନିଶ୍ଚୟେ । ୧୩୯ ।

ଅନନ୍ତରଂ ତେ ସର୍ବେ ଦୁର୍ଗଦ୍ୱାରଂ ଗତ୍ୱା ମହାହବଂ କୃତବନ୍ତଃ ।
ପରେଦ୍ୟୁଶ୍ଚିତ୍ରବର୍ଣ୍ଣୋ ରାଜା ଗୃଧ୍ରମୁବାଚ—ତାତ ! ସ୍ୱପ୍ରତିଜ୍ଞାତମଧୁନା ନିର୍ବାହୟ ।
ଗୃଧ୍ରୋ ବ୍ରୂତେ,—ଦେବ ! ଶୃଣୁ ତାବତ୍ ।

GPNanda Colln., Digitized by srujanika@gmail.com

ଅନନ୍ତର ସେମାନେ ସମସ୍ତେ ଦୁର୍ଗଦ୍ୱାରଦେଶରେ ଉପସ୍ଥିତ ହୋଇ ଘୋର ଯୁଦ୍ଧ ଆରମ୍ଭ କଲେ । ପରଦିନ ରଜା ଚିତ୍ରବର୍ଣ୍ଣ ଗୃଧ୍ରକୁ କହିଲେ,— ପିତଃ ! ବର୍ତ୍ତମାନ ନିଜ ପ୍ରତିଜ୍ଞା ପାଳନ କର । ଗୃଧ୍ର କହିଲା ମହାରାଜ ! ତେବେ ଶୁଣନ୍ତୁ ।

ଅକାଳସହମତ୍ୟଳ୍ପଂ ମୂର୍ଖବ୍ୟସନନାୟକଂ ।
ଅଗୁପ୍ତଂ ଭୀରୁଯୋଧଂ ଚ ଦୁର୍ଗବ୍ୟସନମୁଚ୍ୟତେ । ୧୪୦ ।

ଯେ ଦୁର୍ଗ ସୁଦୃଢ଼ରୂପେ ସୁରକ୍ଷିତ ନୁହେ, ଦୀର୍ଘ ଅବରୋଧେ ଯାହା ଅଟେଳ ହୁଏ । ଅଧକ୍ଷ ବ୍ୟସନ ମୂର୍ଖ ଭୀରୁ ଯୋଦ୍ଧା ଯାର, ସେ ଦୁର୍ଗର ବିପତ୍ତି ଜାଣିବ ଦୁର୍ନିବାର । ୧୪୦ ।

ତତ୍ରାବଦନ ନାସ୍ତି—

ଉପଜାପଶ୍ଚିରାରୋଧୋଽବସ୍କନ୍ଦସ୍ତୀବ୍ରପୌରୁଷଂ ।
ଦୁର୍ଗସ୍ୟ ଲଙ୍ଘନୋପାୟାଶ୍ଚତ୍ୱାରଃ କଥିତା ଇମେ । ୧୪୧ ।

ଏହି ବିପକ୍ଷ ଦୁର୍ଗରେ ସେ ଦୋଷ ଗୋଟିଏମଧ୍ୟ ନାହିଁ,—ଦୀର୍ଘକାଳ ଅବରୋଧ ଭେଦ ସଙ୍ଘଟନ, ତୀବ୍ର ପୌରୁଷ ଅକସ୍ମାତ୍ ଆକ୍ରମଣ । ଏହା ନୀତିଶାସ୍ତ୍ରେ ଅଛି ଚାରିଟି ଉପାୟେ, ଯହିଁ ଦୁର୍ଗ ଯହିଁରେ ଲଙ୍ଘନ କରାଯାଏ । ୧୪୧ ।

ଅତ୍ର ଚ ଯଥାଶକ୍ତି କ୍ରିୟତେ ଯତ୍ନଃ । ଚିତ୍ରବର୍ଣ୍ଣଃ କଥୟତି ଏବମେବ । ତତୋଽନୁଦିତେ ଭାସ୍କରେ ଚତୁର୍ଷ୍ୱପି ଦ୍ୱାରେଷୁ ପ୍ରବୃତ୍ତେ ଯୁଦ୍ଧେ ଦୁର୍ଗାଭ୍ୟନ୍ତରେ ଗୃହେ ଗୃହେ କାକୈରେକଦାଽଗ୍ନିର୍ନିକ୍ଷିପ୍ତଃ । ତତୋ ଗୃହୀତଂ ଦୁର୍ଗଂ,— ଇତି କୋଳାହଳଂ ଶ୍ରୁତ୍ୱାଽନେକଗୃହେଷୁ ଚ ପାବକଂ ପ୍ରଦୀପ୍ତଂ ପ୍ରତ୍ୟକ୍ଷେଣାବଲୋକ୍ୟ ରାଜହଂସସ୍ୟ ସୈନିକା ବହବୋ ଦୁର୍ଗନିବାସିନଃ ସତ୍ୱରଂ ହ୍ରଦଂ ପ୍ରବିଷ୍ଟାଃ । ଯତଃ ।

ବର୍ତ୍ତମାନ ଏ ବିଷୟରେ ଯଥାସାଧ୍ୟ ଚେଷ୍ଟା କରିବା କର୍ତ୍ତବ୍ୟ ଅଟେ । ଚିତ୍ରବର୍ଣ୍ଣ କହିଲା,—ହିଁ, ଏହାହିଁ କର୍ତ୍ତବ୍ୟ ଅଟେ । ଅନନ୍ତର ସୂର୍ଯ୍ୟୋଦୟରୁ ପୂର୍ବେ ଦୁର୍ଗର ଚାରିଦ୍ୱାରେ ଯେତେବେଳେ ଯୁଦ୍ଧ ଆରମ୍ଭ ହେଲା, ସେହି ସମୟରେ ସେହି ମେଘବର୍ଣ୍ଣ ନାମକ ଓ ତାହାର ଅନୁଚରମାନେ ଦୁର୍ଗମଧ୍ୟରେ

GPNanda Colln., Digitized by srujanika@gmail.com

ପଟଗୃହରେ ଅଗ୍ନି ନିକ୍ଷେପ କଲେ । ଅନନ୍ତର ଏହିପରି କୋଳାହଳ ଉତ୍ଥିତ ହେଲା ଯେ,—ଶତ୍ରୁମାନେ ଦୁର୍ଗଅଧିକାର କରିଅଛନ୍ତି । ସେହି କୋଳାହଳ ଶୁଣି ଓ ଚତୁର୍ଦ୍ଦିଗ ଗୃହ ସକଳ ପ୍ରଜ୍ଜ୍ୱଳିତ ଦେଖି ରାଜହଂସ ଦୁର୍ଗବାସୀ ପ୍ରାୟ ସମସ୍ତ ସୈନ୍ୟ ସତ୍ୱର ପଳାୟନ କରି ହ୍ରଦ ମଧ୍ୟରେ ପ୍ରବେଶ କଲେ । କାରଣ,—

ସୁମନ୍ତ୍ରିତଂ ସୁବିକ୍ରାନ୍ତଂ ସୁଯୁଦ୍ଧଂ ସୁପଳାୟିତଂ ।
ପ୍ରାପ୍ତକାଳେ ଯଥାଶକ୍ତ୍ୟା କୁର୍ଯ୍ୟାନ୍ନ ତୁ ବିଚାରୟେତ୍ ।୧୪୬।

ସମସ୍ତେ ବିପୁଳ ବୀର୍ଯ୍ୟ କରିଣ ପ୍ରକାଶ, ସମରେ ବିପକ୍ଷ ପକ୍ଷ କରିବା ବିନାଶ । ଏଣେ ନିଜ ସର୍ବନାଶ ବୁଝିବ ଯେକାଳେ, ପଳାଇଣ ଆତ୍ମରକ୍ଷା, କରିବ ସେକାଳେ ।୧୪୬।

ରାଜହଂସସ୍ତୁ ସ୍ୱଭାବାତ୍ ମନ୍ଦଗତିଃ ସାରସଦ୍ୱିତୀୟଶ୍ଚିତ୍ରବର୍ଣ୍ଣସ୍ୟ ସେନାପତିନା କୁକ୍କୁଟେନାଗତ୍ୟ ବେଷ୍ଟିତଃ । ହିରଣ୍ୟଗର୍ଭଃ ସାରସମାହ— ସେନାପତେ ସାରସ ! ମମାନୁରୋଧାଦାତ୍ମାନଂ କଥଂ ବ୍ୟାପାଦୟସି । ଅଧୁନାହଂ ଗନ୍ତୁମସମର୍ଥଃ । ତ୍ୱଂ ଗନ୍ତୁମଧୁନାପି ସମର୍ଥଃ । ତଦ୍ଗତ୍ୱା ଜଳଂ ପ୍ରବିଶ । ମତ୍ପୁତ୍ରଂ ଚୂଡ଼ାମଣିନାମାନଂ ସର୍ବଜ୍ଞସ୍ୟ ସମ୍ମତ୍ୟା ରାଜାନଂ କରିଷ୍ୟସି । ସାରସୋବ୍ରୂତେ—ଦେବ ! ନ ବକ୍ତବ୍ୟମେବଂ ଦୁଃସହଂ ବଚଃ । ଯାବତ୍ ଚନ୍ଦ୍ରାର୍କୌ ଦିବ୍ୟେତେ ତାବତ୍ ବିଜୟତାଂ ଦେବଃ ।
ଅହଂ ଦେବ ! ଦୁର୍ଗାଧିକାରୀ, ତନ୍ମମ ମାଂସାସୃଗ୍ବିଲିପ୍ତେନ ଦ୍ୱାରବର୍ତ୍ମନା ତାବତ୍ ପ୍ରବିଶନ୍ତୁ ଶତ୍ରବଃ । ଅପରଞ୍ଚ ଦେବ ! ।

ରାଜା ରାଜହଂସ ସ୍ୱଭାବତଃ ସୁଖୀ, ଏଥି ନିମିତ୍ତ ଦ୍ରୁତଗମନରେ ଅଶକ୍ତ ହୋଇକରି ସେନାପତି ସାରସ ସହିତ ଅସ୍ତେ ଗମନ କରୁଅଛି । ଇତ୍ୟବସରରେ ବିପକ୍ଷ ସେନାପତି କୁକ୍କୁଟ ଆସି ତାହାଙ୍କୁ ବେଷ୍ଟନ କଲା । ସେତେବେଳେ ହିରଣ୍ୟଗର୍ଭ ସାରସକୁ କହିଲା,—ସେନାପତେ ! ତୁମ୍ଭେ ମୋହଲାଗି କାହିଁକି ନିଜର ଜୀବନ ନଷ୍ଟକରିବ ? ମୁଁ ପଳାୟନ କରିବାକୁ ଅଶକ୍ତ ହୋଇଅଛି, ତୁମ୍ଭେ ବର୍ତ୍ତମାନ ପଳାଇ ଆତ୍ମରକ୍ଷା କର । ଅତଏବ ଶୀଘ୍ର ଯାଇ ଜଳମଧ୍ୟରେ ପ୍ରବେଶ କର । ତୁମ୍ଭେ ସର୍ବଜ୍ଞ ମନ୍ତ୍ରୀର ସମ୍ମତିକ୍ରମେ ଆମ୍ଭ ପୁତ୍ର



GPNanda Colln., Digitized by srujanika@gmail.com

ଚୂଡ଼ାମଣିକୁ ରାଜପଦରେ ଅଭିଷିକ୍ତ କର । ସାରସ କହିଲା ମହାରାଜ ! ଏରୂପ ମର୍ମ୍ମଭେଦୀ ଅମଙ୍ଗଳକର କଥା କହ ନାହିଁ । ଯେପର୍ଯ୍ୟନ୍ତ ଚନ୍ଦ୍ର ସୂର୍ଯ୍ୟ ଥିବେ, ସେପର୍ଯ୍ୟନ୍ତ ମହାରାଜାଙ୍କର ଜୟ ହେଉ । ମହାରାଜାଙ୍କ ଦୁର୍ଗରକ୍ଷାର ଭାର ଯେତେବେଳେ ମୋ ହସ୍ତରେ, ତେତେବେଳେ ଶତ୍ରୁମାନେ ଅମୃର ମାଂସ ଶୋଣିତଲିପ୍ତ ଦ୍ୱାରପଥ ଦେଇ ଦୁର୍ଗ ମଧ୍ୟରେ ପ୍ରବେଶ କରନ୍ତୁ । ଅଉ ମଧ୍ୟ ମହାରାଜ !—

କ୍ଷମୀ ଦାତା ଗୁଣଗ୍ରାହୀ ସ୍ୱାମୀ ଦୁଃଖେନ ଲଭ୍ୟତେ ।

କ୍ଷମାଶୀଳ ଗୁଣଗ୍ରାହୀ, ବଦାନ୍ୟବତ୍ସଳ, ଚ ମିଳେ ଏରୂପ ପ୍ରଭୁ ବନ ଦୁର୍ଲଭ୍ୟବଳ ।

ରାଜାହ—ଅସ୍ତ୍ୱେବଂ କିନ୍ତୁ,

ଶୁଚିର୍ଦକ୍ଷୋଽନୁରକ୍ତଶ୍ଚ ଭୃତ୍ୟୋଽପି ଖଳୁ ଦୁର୍ଲଭଃ । ୧୪୩ ।

ରାଜା କହିଲେ—ସତ୍ୟ କିନ୍ତୁ,—

ଦକ୍ଷ ଭକ୍ତ ଅନୁରାଗ ବଶ୍ରୁଦ୍ଧ ହୃଦୟ, ଏରୂପ ଭୃତ୍ୟଟି ହେବେ ଦୁର୍ଲଭ ନିଶ୍ଚୟ । ୧୪୩ ।

ସାରସୋ ବ୍ରୂତେ—ଶୃଣୁ ଦେବ !
ଯଦି ସମରମପାସ୍ୟ ନାସ୍ତି ମୃତ୍ୟୋ-
ର୍ଭୟମିତି ଯୁକ୍ତମିତୋଽନ୍ୟତଃ ପ୍ରଯାତୁଂ ।
ଅଥ ମରଣମବଶ୍ୟମେବ ଜନ୍ତୋଃ
କିମିତି ମୁଧା ମଳିନଂ ଯଶଃ କ୍ରିୟତେ । ୧୪୪ ।

ସାରସ କହିଲା;—ଶ୍ରବଣ କରନ୍ତୁ ମହାରାଜ !

ସମର ତ୍ୟଜିଲେ ଯଦି ହୁଏ ମୃତ୍ୟୁହିନ; ତେବେ ପଳାୟନ ନ କରିବାଟ ନିଶ୍ଚୟ; ଅଉ ଯଦି ଅରେ ନିଶ୍ଚେ ମରିବାକୁ ହୁଏ; ତେବେହେଁଟି ନିଜ ଯଶେ ଏ କଳଙ୍କ ରହେ । ୧୪୪ ।

ଅନ୍ୟଚ । ଭବେଽସ୍ମିନ୍ ପବନୋଦ୍ଭ୍ରାନ୍ତବୀଚିବିଭ୍ରମଭଙ୍ଗୁରେ ।
ଜାୟେତ ପୁଣ୍ୟଯୋଗେନ ପରାର୍ଥେ ଜୀବିତବ୍ୟୟଃ । ୧୪୫ ।

GPNanda Colln., Digitized by srujanika@gmail.com

ଅର୍ଥ ମଧ—ବତାସେ ତରଙ୍ଗମାଳା ସଲିଳେ ଯେପରି; ଅନିତ୍ୟ ଏ ଜୀବମାଳା ଜାଣିବ ସେପରି । ଯେ କରେ ଅନିତ୍ୟ ଦେହ ପରହିତେ ଦାନ, ସାର୍ଥକ ଜୀବନ ତାର ସେହି ପୁଣ୍ୟବାନ । ୧୪୫ ।

ତ୍ୱଂ ଚ ଦେବ । ସ୍ୱାମୀ ସର୍ବଥା ରକ୍ଷଣୀୟଃ । ଯତଃ ।

ମହାରାଜ । ଅପଣ ସ୍ୱାମୀ, ଅପଣଙ୍କୁ ସର୍ବପ୍ରକାରେ ରକ୍ଷା କରିବାକୁ ହେବ । କାରଣ,—

ସ୍ୱାମ୍ୟମାତ୍ୟଶ୍ଚ ରାଷ୍ଟ୍ରଂ ଚ ଦୁର୍ଗଂ କୋଶୋ ବଲଂ ସୁହୃତ୍ ।
ରାଜ୍ୟାଙ୍ଗାନି ପ୍ରକୃତୟଃ ପୌରାଣାଂ ଶ୍ରେଣୟୋଽପି ଚ । ୧୪୬ ।

ରାଜା ମନ୍ତ୍ରୀ ମିତ୍ର କୋଷ ରାଷ୍ଟ୍ର ଦୁର୍ଗ ବଳ; ପୌରଶ୍ରେଣୀ ଏହି ଅଠ ରାଜ୍ୟର ସମ୍ବଳ । ୧୪୬ ।

ଅପିଚ । ପ୍ରକୃତଃ ସ୍ୱାମିନା ତ୍ୟକ୍ତା ସମୃଦ୍ଧାପି ନ ଜୀବତି ।

ଅପି ଧନ୍ୱନ୍ତରିର୍ବୈଦ୍ୟଃ କିଂ କରୋତି ଗତାୟୁଷି । ୧୪୭

ଅର୍ଥ ମଧ—ରାଜାହିଁ ରାଜ୍ୟର ମୂଳ ଯାହାର ନରହେ, ସୁସମୃଦ୍ଧି ହେଲେ ମଧ ରାଜ୍ୟଟି ନ ରହେ । ପ୍ରାଣବାୟୁ ଦେହୁଁ ଯେବେ କରେ ପରିହାର, ଅସିଲେଟି ଧନ୍ୱନ୍ତରି କି କରିବ ତାର । ୧୪୭

ଅପରଞ୍ଚ;—ନରେଶେ ଜୀବଲୋକୋଽୟଂ ନିମୀଲତି ନିମୀଲତି ।

ଉଦେତ୍ୟୁଦୀୟମାନେ ଚ ରବାବିବ ସରୋରୁହଂ । ୧୪୮ ।

ଅର୍ଥ ମଧ—ବିକଶିତ ହୁଏ ପଦ୍ମ ଉଇଁଲେ ତପନ; ନିମୀଳିତ ହୁଏ ଅସ୍ତେ କଲେଟି ଗମନ; ସେପରି ରାଜାର ତେଜେ ପ୍ରଜାର ଉଦୟ; ରାଜାର ବିଲୟେ ହୁଏ ପ୍ରଜାର ବିଲୟ । ୧୪୮ ।

ଅଥ କୁକ୍କୁଟେନାଗତ୍ୟ ରାଜହଂସସ୍ୟ ଶରୀରେ ଖରତରନଖାଘାତଃ କୃତଃ । ତତଃ ସତ୍ୱରମୁପସୃତ୍ୟ ସାରସେନ ସ୍ୱଦେହେନାଚ୍ଛାଦ୍ୟ ରାଜା ଜଲେ ପ୍ରକ୍ଷିପ୍ତଃ । କୁକ୍କୁଟୋଽପି ସେନାପତିନା ସାରସେନ ଶ୍ଚଞ୍ଚୁପ୍ରହାରେଣ ବ୍ୟାପାଦିତଃ । ପଶ୍ଚାତ୍ ସାରସୋଽପି ବହୁଭିଃ ପକ୍ଷିଭିଃ ସମ୍ଭୂୟ ବ୍ୟାପାଦିତଃ । ଅଥ ଚିତ୍ରବର୍ଣ୍ଣୋ ଦୁର୍ଗଂ ପ୍ରବିଶ୍ୟ ଦୁର୍ଗାବସ୍ଥିତଂ ଦ୍ରବ୍ୟମ୍

GPNanda Colln., Digitized by srujanika@gmail.com

ବନ୍ଦିଭିର୍ଜୟଶବ୍ଦେନାନନ୍ଦିତୋ ଜଗାମ । ଅଥ ରାଜପୁତ୍ରୈରୁକ୍ତଂ;—ତସ୍ମିନ୍ ରାଜହଂସବଲେ ପୁଣ୍ୟବାନ୍ ସାରସ ଏବ । ଯେନ ସ୍ୱଦେହଦାନେନ ସ୍ୱାମୀ ରକ୍ଷିତଃ । ଯତଃ ।

ଅନନ୍ତର ବିପକ୍ଷ ସେନାପତି କୁକ୍କୁଟ ଆସି ରାଜହଂସର ଶରୀରେ ସୁତୀକ୍ଷ୍ଣ ନଖାଘାତ କଲା । ସାରସ ତତ୍କ୍ଷଣାତ୍ ଦ୍ରୁତପଦରେ ଯାଇ ନିଜ ଶରୀରଦ୍ୱାରା ରାଜାଙ୍କୁ ଆଚ୍ଛାଦନ କଲା । ଅନନ୍ତର ସାରସ କୁକ୍କୁଟର ନଖ ଓ ଚଞ୍ଚୁର ପ୍ରହାର ଦ୍ୱାରା ଜର୍ଜରିତ ହୋଇ ନିଜ ଦେହଦ୍ୱାରା ଆଚ୍ଛାଦନ ପୂର୍ବକ ରାଜାଙ୍କୁ ନେଇ ଜଳ ମଧ୍ୟରେ ନିକ୍ଷେପ କଲା । ଅନନ୍ତର ସେନାପତି ସାରସ ଚଞ୍ଚୁ ପ୍ରହାରଦ୍ୱାରା ବିପକ୍ଷ ସେନାପତି କୁକ୍କୁଟର ପ୍ରାଣସଂହାର କଲା ତହିଁରେ ବହୁସଂଖ୍ୟକ ବିପକ୍ଷ ସୈନ୍ୟ ଏକକାଳେ ଆସି ଆକ୍ରମଣ କରିବାରୁ ସାରସ ମଧ୍ୟ ହତ ହେଲା । ପରେ ରାଜା ଚିତ୍ରବର୍ଣ୍ଣ ଦୁର୍ଗ ମଧ୍ୟରେ ପ୍ରବେଶ କରି ଦୁର୍ଗ ସ୍ଥିତ ସମସ୍ତ ଦ୍ରବ୍ୟାଦି ଅଧିକାର କରି ବନ୍ଦିଗଣର ଜୟଧ୍ୱନିଦ୍ୱାରା ପରମାନନ୍ଦରେ ଗମନ କଲେ । ରାଜପୁତ୍ରମାନେ କହିଲେ ;—ରାଜହଂସ ସେହି ସୈନ୍ୟ ମଧ୍ୟରେ ପୁଣ୍ୟବାନ୍ ! ସେ ନିଜଦେହ ଦାନ କରି ପ୍ରଭୁର ପ୍ରାଣ ରକ୍ଷା କଲା । କାରଣ,

ଜନୟନ୍ତି ସୁତାନ୍ ଗାବଃ ସର୍ବା ଏବ ଗବାକୃତୀନ୍ ।
ବିଷାଣୋଲ୍ଲିଖିତସ୍କନ୍ଧଂ କଶ୍ଚିଦେବ ଗବାଂ ପତିଂ । ୧୪୯ ।

ଶତଶତ ବର୍ଷ ଦେଖ ଧେନୁର ଉଦରେ, ସମସ୍ତେହିଁ ଗବାକୃତି ଜନ୍ମ ଲଭ କରେ, କିନ୍ତୁ ମହାସ୍କନ୍ଧ ମହାଶୃଙ୍ଗ ମହାବଳ, ଯୂଥପତି ମହାବୃଷ ଜନମେ ଧବଳ । ୧୪୯ ।

ବିଷ୍ଣୁଶର୍ମଣୋକ୍ତଂ—ସ ତାବତ୍ ସତ୍ତ୍ୱଶୀତାନ୍ ଅକ୍ଷୟାନ୍ ଲୋକାନ୍ ବିଦ୍ୟାଧରୀପରିଜନୋଽନୁଭବତୁ ମହାସତ୍ତ୍ୱଃ । ତଥାଚୋକ୍ତଂ ।

ବିଷ୍ଣୁଶର୍ମା କହିଲେ—ସେହି ମହାତ୍ମା ସାରସ ନିଜ ପୁଣ୍ୟବଳରେ ବିଦ୍ୟାଧରୀଗଣରେ ପରିବୃତ ହୋଇ ଅକ୍ଷୟ ସ୍ୱର୍ଗସୁଖ ଭୋଗ କରୁ । କଥିତ ଅଛି,—

ଆହବେଷୁ ଚ ଯେ ଶୂରାଃ ସ୍ୱାମ୍ୟର୍ଥେ ତ୍ୟକ୍ତଜୀବିତାଃ ।
ଭର୍ତ୍ତୃଭକ୍ତାଃ କୃତଜ୍ଞାଶ୍ଚ ତେ ନରାଃ ସ୍ୱର୍ଗଗାମିନଃ । ୧୫୦ ।

GPNanda Colln., Digitized by srujanika@gmail.com

ପ୍ରଭୁକାର୍ଯ୍ୟେ ରଣକ୍ଷେତ୍ରେ ଯେ ସକଳ ବୀର, ଯୁଝିଣ ଯୁଝିଣ ତ୍ୟଜେ ଆପଣା ଶରୀର । କୃତଜ୍ଞ ହୃଦୟ ସେହି ପ୍ରଭୁଭକ୍ତ ଗଣ, ଅକ୍ଷୟ ଅମର ଧାମେ କରନ୍ତି ଗମନ । ୧୫୦ ।

ଯତ୍ର ଯତ୍ର ହତଃ ଶୂରଃ ଶତ୍ରୁଭିଃ ପରିବେଷ୍ଟିତଃ ।
ଅକ୍ଷୟାନ୍ ଲଭତେ ଲୋକାନ୍ ଯଦି କ୍ଳୈବ୍ୟଂ ନ ଗଚ୍ଛତି ॥

ଯେ ଯେ ସ୍ଥାନେ ଶତ୍ରୁଗଣେ ହୋଇଣ ବେଷ୍ଟିତ, ମହାଟଳେ କରି ଯୁଦ୍ଧ ହୁଏ ନିପତିତ । ମର୍ତ୍ତ୍ୟ ଦେହ ପରିହରି ସେହି ବୀରଗଣ, ସନାତନ ସ୍ୱର୍ଗଲୋକେ କରନ୍ତି ଗମନ । ୧୫୧ ।

ବିଗ୍ରହଃ ଶ୍ରୁତୋ ଭବଦ୍ଭିଃ । ରାଜପୁତ୍ରୈରୁକ୍ତଂ—ଶ୍ରୁତ୍ୱା ସୁଖିନୋ ଭୂତା ବୟଂ । ବିଷ୍ଣୁଶର୍ମ୍ମାବ୍ରବୀତ୍—ଅପରମପ୍ୟେବମସ୍ତୁ ।

ତୁମ୍ଭେମାନେ ବିଗ୍ରହ ବିଷୟ ଶୁଣିଲତ ? । ରାଜପୁତ୍ରମାନେ କହିଲେ, ଅମ୍ଭେମାନେ ଶୁଣି ପରମସୁଖୀ ହେଲୁଁ । ବିଷ୍ଣୁଶର୍ମ୍ମା କହିଲେ,—ଅଉ ମୁଁ ଏହି ଆଶୀର୍ବାଦ କରେଁ ଯେ;—

ବିଗ୍ରହଃ କରିତୁରଗପତ୍ତିଭିର୍ନୋ କଦାପି ଭବତାଂ ମହୀଭୁଜାଂ ।
ନୀତିମନ୍ତ୍ରପବନୈଃ ସମାହତାଃ ସଂଶ୍ରୟନ୍ତୁ ଗିରିଗହ୍ୱରଂ ଦ୍ୱିଷଃ । ୧୫୨ ।

ଗଜବାଜୀପତ୍ତି ଆଦି ନେଇ ସୈନ୍ୟଗଣ, ତୁମ୍ଭମାନଙ୍କର ଯେମନ୍ତ ନ କରିବ ରଣ । ଶତ୍ରୁଗଣ ନୀତି ମନ୍ତ୍ର ପବନର ଭରେ, ତାଡ଼ିତ ହୁଅନ୍ତୁ ସର୍ବେ ପର୍ବତ ଗହ୍ୱରେ । ୧୫୨ ।

ଇତି ଶ୍ରୀବିଷ୍ଣୁଶର୍ମ୍ମାକୃତେ ହିତୋପଦେଶେ ବିଗ୍ରହୋ ନାମ ତୃତୀୟଃ

କଥା ସଂଗ୍ରହଃ ।

ଇତି ହିତୋପଦେଶେ ବିଗ୍ରହ ନାମକ ତୃତୀୟ କଥା ସଂଗ୍ରହ ।



କଟକ, ଅରୁଣୋଦୟ ପ୍ରେସରେ ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ମୁଦ୍ରିତ ।

GPNanda Colln., Digitized by srujanika@gmail.com

